# ସପ୍ତଜ୍ୟୋତି



* ସଂପାଦକ ମଣ୍ଡଳୀ *

ଡକ୍ଟର ବିଚିତ୍ରାନନ୍ଦ ମହାନ୍ତି
ଶ୍ରୀ ବିଚିତ୍ରାନନ୍ଦ କର
ଶ୍ରୀ ସୂର୍ଯ୍ୟନାରାୟଣ ଦାସ
ଶ୍ରୀ ଯମେଶ୍ୱର ତ୍ରିପାଠୀ

* ପରିଚାଳନା ସଂପାଦକବୃନ୍ଦ

ଶ୍ରୀ ଗୋକୁଳାନନ୍ଦ ଦାସ
ଶ୍ରୀ ଶୁଭନାରାୟଣ ସ୍ୱାଇଁ
ଶ୍ରୀ ରାମଦାସ ରାୟ

ପ୍ରକାଶକ

ଉତ୍କଳ ପାଠକ ସଂସଦ

କଟକ * ୧୯୮୧

ପରିବେଷକ

ଓଡ଼ିଶା ବୁକ୍ ଷ୍ଟୋର

ବିନୋଦବିହାରୀ, କଟକ-୨

# ସମ୍ମାନିତ ପ୍ରତିଭା

ନାଟ୍ୟକାର ଗୋପାଳ ଛୋଟରାୟ

ସମାଜସେବୀ ନନ୍ଦକିଶୋର ଦାସ

ଇତିହାସବେତ୍ତା ଡକ୍ଟର ନବୀନକୁମାର ସାହୁ

ସାହିତ୍ୟିକ ସୁଧାକର ପଟ୍ଟନାୟକ

ପ୍ରତ୍ନତତ୍ତ୍ୱବିତ୍ କେଦାରନାଥ ମହାପାତ୍ର

ଶିଳ୍ପୀଗୁରୁ ଜଗନ୍ନାଥ ମହାପାତ୍ର

ନୃତ୍ୟଗୁରୁ ଭଗବାନ ସାହୁ



॥ ପରିଚୟ ପ୍ରଦାନ କରିଛନ୍ତି ॥

ଡକ୍ଟର ରତ୍ନାକର ଚଇନି

ଅଧ୍ୟାପକ ବାଉରୀବନ୍ଧୁ କର

ଡକ୍ଟର ଅସିତ କବି

ଡକ୍ଟର ସଚ୍ଚିଦାନନ୍ଦ ମହାନ୍ତି

ଶ୍ରୀ ସୂର୍ଯ୍ୟନାରାୟଣ ଦାସ (ଓ. ଏସ୍. ଏସ୍.)

ଶ୍ରୀ ଗୋକୁଳାନନ୍ଦ ଦାସ

ଡକ୍ଟର କୃଷ୍ଣଚରଣ ବେହେରା



ମୂଲ୍ୟ-୭ ଟଙ୍କା



ପ୍ରକାଶକାଳ : ୨୩ । ୩ । ୧୯୮୧

ମୁଦ୍ରଣ : ବିକାଶ ପ୍ରିଣ୍ଟର୍ସ, ପ୍ରଫେସରପଡ଼ା, କଟକ-୩

## ପ୍ରାକ୍ କଥନ :

ଏ ଜାତିର ଶତ ଶତ ପ୍ରତିଭାଧର ସ୍ୱ ସ୍ୱ କ୍ଷେତ୍ରରେ ପ୍ରତିଷ୍ଠିତ । କଳା, ବିଜ୍ଞାନ, ସାହିତ୍ୟ, ସଂସ୍କୃତି, ସ୍ଥାପତ୍ୟ, ଶିଳ୍ପ, ଭାସ୍କର୍ଯ୍ୟ ଇତ୍ୟାଦି ବିଭିନ୍ନ କ୍ଷେତ୍ରରେ ସେମାନଙ୍କ ସ୍ୱାକ୍ଷର ସୁସ୍ପଷ୍ଟ । ସେମାନଙ୍କ ମଧ୍ୟରୁ କେତେକ ହୁଏତ ସମାଜରେ ସ୍ୱୀକୃତ, ସମ୍ମାନିତ । କିନ୍ତୁ ବିଭିନ୍ନ କାରଣରୁ ଆହୁରି ଅନେକ ଉପଯୁକ୍ତ ସମ୍ମାନ ଲାଭରୁ ବଂଚିତ ।

ଏହା ସ୍ୱୀକାର୍ଯ୍ୟ ଯେ, ପ୍ରତିଭାପୂଜା ତଥା ପୂଜ୍ୟପୂଜା ଗୋଟିଏ ଜାତିର ସାଂସ୍କୃତିକ ଜୀବନକୁ ବଳିଷ୍ଠ ଓ ରୁଚିମନ୍ତ କରିଥାଏ । ଓଡ଼ିଶାରେ ଅନେକ କୃତୀସନ୍ତାନ ଜନ୍ମ ହୋଇ ବିଭିନ୍ନ କ୍ଷେତ୍ରରେ ଆନ୍ତର୍ଜାତିକ ସମ୍ମାନର ଅଧିକାରୀ ମଧ୍ୟ ହୋଇପାରିଥିଲେ, କିନ୍ତୁ ସେମାନଙ୍କର ଜୀବନୀ-ପରିଚୟ, କୃତୀ-ଆଲେଖ୍ୟ ଯଥାଯଥଭାବରେ ସଂଗୃହିତ ହୋଇ ପାରିନାହିଁ ।

ତେଣୁ ଉତ୍କଳ ପାଠକ ସଂସଦ ପୂଜ୍ୟପୂଜାର ପରଂପରା ରକ୍ଷା ପାଇଁ ଜୀବିତ ପ୍ରତିଭାମାନଙ୍କୁ ସମ୍ମାନ ଦେବାର କିଞ୍ଚିତ୍ ପ୍ରୟାସମାନ କରିଛି । ଏହି କାର୍ଯ୍ୟକ୍ରମ ଅନୁଯାୟୀ ୧୯୭୪ ମସିହାରେ ସର୍ବଶ୍ରୀ କାହ୍ନୁ ଚରଣ ମହାନ୍ତି, ରାଧାମୋହନ ଗଡ଼ନାୟକ, ରାଜକିଶୋର ପଟ୍ଟନାୟକ, ତାରିଣୀ ଚରଣ ପାତ୍ର, କେଳୁ ଚରଣ ମହାପାତ୍ର, ଓ ଭଗବାନ ପତି ଏବଂ ୧୯୭୫ ମସିହାରେ ଡକ୍ଟର କୁଞ୍ଜବିହାରୀ ଦାଶ, ଶ୍ରୀମତୀ ସରଳା ଦେବୀ, ଶ୍ରୀଧର ମହାପାତ୍ର, ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ, ଶ୍ରୀମତୀ ମିନତି ମିଶ୍ର ଓ ଶ୍ରୀ ସାମୁଏଲ୍ ସାହୁ (ବାବି) ଙ୍କୁ ସମ୍ବର୍ଦ୍ଧନା ଜ୍ଞାପନ କରାଯାଇଥିଲା । ପ୍ରଥମ ପାଞ୍ଚ ବର୍ଷରେ କେବଳ ମାନପତ୍ର ଖଣ୍ଡିଏ ଖଣ୍ଡିଏ ଦେଇ ଏହି ପ୍ରତିଭାଧରମାନଙ୍କୁ ସମ୍ମାନିତ କରିବାରେ ଏ ସଂସଦ ସନ୍ତୁଷ୍ଟ ହୋଇ-ପାରିନାହିଁ । ସେଥିପାଇଁ ପରେ ପର୍ଯ୍ୟାୟକ୍ରମେ ଉତ୍କଳର ମହାନ୍ ବ୍ୟକ୍ତିମାନଙ୍କ ମଧ୍ୟରୁ ସାତଜଣଙ୍କୁ ସମ୍ମାନିତ କରି ସେହିମାନଙ୍କର ଜୀବନ-ଚରିତ ଓ କୃତିକଳାପକୁ ପୁସ୍ତକ ଆକାରରେ ପ୍ରକାଶ କରିଆସୁଛି ।

ଏହି ସଂସଦ ତରଫରୁ ଏ ପର୍ଯ୍ୟନ୍ତ ପାଞ୍ଚୋଟି ଜୀବନୀ ସଂକଳନ ପ୍ରକାଶ ପାଇଲାଣି— (୧) ପ୍ରତିଭା ପରିଚୟ (୧୯୭୬) (୨) ସପ୍ତରଶ୍ମି (୧୯୭୭) (୩) ସପ୍ତ ଶିଖା (୧୯୭୮) (୪) ସପ୍ତ ପ୍ରଦୀପ (୧୯୭୯) (୫) ସପ୍ତ ଶ୍ରୀ (୧୯୮୦) (୬) ସପ୍ତଜ୍ୟୋତି (୧୯୮୧)(ସଦ୍ୟ ପ୍ରକାଶିତ) ।

୧୯୭୬ର 'ପ୍ରତିଭା ପରିଚୟ' ପୁସ୍ତକରେ ସାହିତ୍ୟ ସାଧକ କାଳନ୍ଦୀ ଚରଣ ପାଣିଗ୍ରାହୀ, କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ, ସାହିତ୍ୟିକ—ସାଂବାଦିକ ଜୟଦୟନାଥ ଷଡ଼ଙ୍ଗୀ, ନାଟ୍ୟକାର କାର୍ତ୍ତିକ କୁମାର ଘୋଷ, ନୃତ୍ୟଗୁରୁ ମାଷ୍ଟର ରାମଚନ୍ଦ୍ର ମାଣିଆ, ସ୍ୱର ସାଧକ ହିମାଂଶୁଭୂଷଣ ହରିଚନ୍ଦନ, ପ୍ରକାଶକ ଅନନ୍ତ ମିଶ୍ରଙ୍କ ଜୀବନୀ ଓ କୃତି ଆଲୋଚିତ ହୋଇଛି ।

୧୯୭୭ରେ ସଂକଳିତ 'ସପ୍ତରଶ୍ମି' ପୁସ୍ତକରେ ଓଡ଼ିଆ ସଂବାଦ ସାହିତ୍ୟର ଜନକ ଠାକୁର ରାଧାନାଥ ରଥ, ଜ୍ଞାନପୀଠ ପୁରସ୍କାର ବିଜେତା ଔପନ୍ୟାସିକ ଗୋପୀନାଥ ମହାନ୍ତି, ଶିଳ୍ପୀ ବିପିନବିହାରୀ ଚୌଧୁରୀ, ଅନୁବାଦକ ଲାଲ ନଗେନ୍ଦ୍ର କୁମାର ରାୟ, ସଂଗୀତ ସୁଧାକର ବାଳକୃଷ୍ଣ ଦାସ, ଭାରତୀଭୂଷଣ ସତ୍ୟନାରାୟଣ ରାଜଗୁରୁ ଏବଂ ପ୍ରକାଶକ ଗୋକୁଳଚନ୍ଦ୍ର କରଙ୍କର ଜୀବନୀ ଓ କୃତି ପ୍ରକାଶିତ ହୋଇଛି ।

୧୯୭୮ରେ ପ୍ରକାଶିତ 'ସପ୍ତଶିଖା' ପୁସ୍ତକରେ ଅଭିନେତା ଯତୀନ୍ ଦାସ, ସ୍ୱାଧୀନତା ସଂଗ୍ରାମର ପ୍ରଥମ ରାଜ-ବନ୍ଦୀ ରାଜକୃଷ୍ଣ ବୋଷ, କଳାକୁଞ୍ଜ ଯାଦୁକର ମୁରଲୀଧର ଟାଲି, ସମ୍ପାଦକ ଶ୍ରୀହର୍ଷ ମିଶ୍ର, କଥା-ସାହିତ୍ୟ-ଶିଳ୍ପୀ ସୁରେନ୍ଦ୍ର ମହାନ୍ତି, ସଙ୍ଗୀତଜ୍ଞ ଶ୍ୟାମସୁନ୍ଦର ଧୀର ଏବଂ ଲବ୍ଧପ୍ରତିଷ୍ଠ ପ୍ରକାଶକ ଗୋବିନ୍ଦ ଚରଣ ପାଣିଙ୍କ ସାଧନାପୂର୍ଣ୍ଣ ଜୀବନୀ ସନ୍ନିବେଶିତ ହୋଇଛି ।

୧୯୭୯ର 'ସପ୍ତ ପ୍ରଦୀପ' ପୁସ୍ତକରେ ଛଉନୃତ୍ୟଗୁରୁ ଚନ୍ଦ୍ରଶେଖର ଭଞ୍ଜ, ଚିତ୍ରଶିଳ୍ପୀ ହରିଶରଣ ମହାପାତ୍ର, ସଂଗୀତ ସାଧକ ଜଗବନ୍ଧୁ ସାହୁ, ବଚ୍ଛନ୍ଦାଞ୍ଚଳର କବି ଜଗନ୍ନାଥ ଦେବ, ଜନସେବୀ ନିତ୍ୟାନନ୍ଦ କାନୁନଗୋ, ଶିକ୍ଷାବିତ୍ ପ୍ରଫେସର ପ୍ରହ୍ଲାଦ ପ୍ରଧାନ, ସାହିତ୍ୟ ସାଧକ ଶ୍ରଦ୍ଧାକର ସୁପକାରଙ୍କ କୃତିଆଲେଖ୍ୟ ବର୍ଣ୍ଣିତ ହୋଇଛି ।

୧୯୮୦ ର 'ସପ୍ତଶ୍ରୀ' ପୁସ୍ତକରେ ସାହିତ୍ୟସେବୀ ଡ଼କ୍ଟର ହରେକୃଷ୍ଣ ମହତାବ, ଐତିହାସିକ ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, ନାଟ୍ୟକାର ଶ୍ରୀ ରାମଚନ୍ଦ୍ର ମିଶ୍ର, ସାହିତ୍ୟିକ ଶ୍ରୀ ରାମପ୍ରସାଦ ସିଂହ, ବେଦାନ୍ତାଳଙ୍କାର ପଣ୍ଡିତ ଗଣେଶ୍ୱର ରଥ,ଗାୟକରତ୍ନ ଶ୍ରୀ ବୈଦ୍ୟନାଥ ଶର୍ମା, ପାଲାଗାୟକ, ଶ୍ରୀ ପରମାନନ୍ଦ ଶରଣଙ୍କ ଜୀବନୀ ଉପରେ ଆଲୋକପାତ କରାଯାଇଛି ।

ଆମେ ଆଶାକରୁ, ଆମର ଏହି ଉଦ୍ୟମ ଓଡ଼ିଶାର ପାଠକ-ପାଠିକାମାନଙ୍କୁ କିଂଚିତ ଆନନ୍ଦ ଦେଇ ପାରିବ ।

ଅବଶ୍ୟ, ଏ ଉଦ୍ୟମ ତଥାପି ସମ୍ପୂର୍ଣ୍ଣ ନୁହେଁ । ଆହୁରି ଅନେକ କିଛି କରାଯାଇପାରିବ । କିନ୍ତୁ ଆମର ବିଶ୍ୱାସ ଯେ, ଏକ୍ଷେତ୍ରରେ ଏହା ଆଲୋକ-ବର୍ତ୍ତିକା ସଦୃଶ ହେବ ।

କଟକ
ତା ୨୩ । ୩ । ୮୧

ଇତି
ସଂପାଦକ ମଣ୍ଡଳୀ

# ସଂଳାପ-ସିପାହୀ ଛୋଟରାୟ

✻ ଡକ୍ଟର ରତ୍ନାକର ଚଇନି

ବହି ଯାଉଥିବା ପାଣି ଓ ବିତି ଯାଉଥିବା ସମୟର ଯେ କାହିଁକି ହିସାବ-ନିକାଶ କରାଯାଏ, ବେଳେବେଳେ ସେକଥା ଭାବିଲେ ହସ ମାଡ଼େ । ହୁଏତ ତାହାର ସରଳ ଉତ୍ତର ହୁଅନ୍ତା ପ୍ରବହମାନତା ସେମାନଙ୍କ ଧର୍ମ । ମାତ୍ର ଯଦି କିଏ ପ୍ରଶ୍ନ କରେ—ଲୁହ ବହିଯିବାପାଇଁ ଆଖିର ଦୁଇଟି ସୀମାନ୍ତ ନିର୍ଦ୍ଧାରିତ ଥିଲାବେଳେ, ସିଏ କାହିଁକି ଛକପଡ଼ା ମଧ୍ୟଭାଗରୁ ଉଛୁଳି ପଡ଼େ ଗାଲ ମଝିକୁ, ସେଠାରୁ ପୁଣି ଚିବୁକକୁ ? —ସତରେ କାହିଁକି ? ସବୁକଥାର ନିର୍ଦ୍ଧାରିତ ଗତି ଥିଲେ ବି ବେଳେବେଳେ ତା'ର ବ୍ୟତିକ୍ରମ ଦେଖାଯାଏ । ଧରି ନିଆଯାଉ, 'ବହି ଯାଉଥିବା ପାଣି ଓ ବିତି ଯାଉଥିବା ସମୟର ହିସାବ-ନିକାଶ' ସେମିତି ଗୋଟାଏ ବ୍ୟତିକ୍ରମ । ଏହା ବୋଧହୁଏ ସେହି ଅଦୃଶ୍ୟ ନିର୍ଦ୍ଦେଶକର ଇଙ୍ଗିତ । କିଛି ବ୍ୟତିକ୍ରମ ଥାଉ ।

ସେମିତି, ଯେଉଁ ଜିନିଷଟି ଯେଉଁଠି ରହିବା କଥା, ତାକୁ ଅନ୍ୟତ୍ର ରଖିଲେ ବା ଦେଖିଲେ, ତାକୁ କୁହାଯାଏ ବ୍ୟତିକ୍ରମ । ଯେମିତି କି 'ସିପାହୀ'—ଯୁଦ୍ଧକ୍ଷେତ୍ର ବା ସମର ଶିଳାସ ସହିତ ସେମାନଙ୍କର ସଂପର୍କ । କିନ୍ତୁ ଯେ କେହି ସାମରିକ ପୋଷାକ ପିନ୍ଧି, କାନ୍ଧରେ ବନ୍ଧୁକ ଝୁଲାଇ, ହାତରେ ପାଞ୍ଚଣ ଧରି, ଚାଷ କରୁଥିବା ଲୋକଟିଏ ଦେଖିଲେ, ହସିବ କିମ୍ବା ଆଶ୍ଚର୍ଯ୍ୟ ହେବ । କାରଣ ଏଇଟା ବ୍ୟତିକ୍ରମ । ମାତ୍ର ଲେଖକଙ୍କୁ ସିପାହୀ କହିବା ସେଇଭଳି ବ୍ୟତିକ୍ରମ କି ? ଆଚ୍ଛା, ଛାଡ଼ନ୍ତୁ— ଆପଣମାନେ ସବୁ ଲେଖକଙ୍କୁ 'କଲମର ସିପାହୀ' ନ କହନ୍ତୁ । କିନ୍ତୁ

'ଗ୍ଲେଟବସ୍ତ୍ୱ'ଙ୍କୁ ସଂଗ୍ରାମୀ-ସିପାହୀ କହିବାକୁ ଦ୍ୱିଧା କରିବେ ନାହିଁ—ଏକଥା ଜାଣେ । (ଖଣ୍ଡା-ତରଆଲ୍ଲୁ ଧରି ଯୁଦ୍ଧ ଲଢ଼ିବାପରି ତାଙ୍କ ଜାତିର କାମ । ) ଜୀବନରେ ସେ ଖଣ୍ଡା-ତରବାରି ଧରି ରଣକୌଶଳ କେବେ ପ୍ରଦର୍ଶନ କରିଛନ୍ତି କି ନା, ଜାଣେନା । ମାତ୍ର ଏତିକି ଜାଣେ, ସେ କଲମ ଧରି 'କଥା-ସଂଗ୍ରାମ' ଆରମ୍ଭ କଲେ, କେହି ତାଙ୍କ ପାଖ ପଶି ପାରିବେ ନାହିଁ । ତେଣୁ ତ ସେ ଦୁର୍ଦ୍ଧାନ୍ତ ସିପାହୀ ।

## ବଢ଼ି ଯାଉଥିବା ସମସ୍ୟା :

ସମସ୍ତ କାହାର ଠିକଣା ମନେ ରଖେନା । ବଡ଼ ଭୁଲା ସେ । ସେଦିନ ସେମିତି, ଜଗତସିଂହପୁରର ମ୍ୟୁନିସିପାଲଟି ମାଟିରେ ଯେଉଁ ନୂଆ ଜୀବଟି ପ୍ରଥମ ସୂର୍ଯ୍ୟାଲୋକ ଦେଖିଲା, ତାର ହିସାବ ରଖୁ ରଖୁ ମସ୍ତବଡ଼ ଭୁଲଟାଏ କରି ଦେଲା ଏଇ ସମୟ । ତାରିଖଟା ହେଇଥାଆନ୍ତା ଷୋଳ ଏପ୍ରିଲ୍ ୧୯୧୭ ; ମାତ୍ର ସମୟ ମନେ ରଖିଲା, ପହିଲା ଜାନୁଆରୀ ୧୯୧୭ । କି ବିଚିତ୍ର ଭୁଲପଣ ! ଇଏ ବୟସ ଲୁଚାଇବା ଯୁଗରେ ବୟସ ବଢ଼ିଯିବା କି ଦୁର୍ଘଟଣାଜନକ ବ୍ୟାପାର । ଏ ବିଭ୍ରାନ୍ତ ସମୟ ଯୋଗୁଁ ହିଁ ହେଲା । ହିସାବ ରଖିଲୁତ ଠିକ୍ କରି ରଖ । ଫଳତଃ ସିପାହୀ ଗ୍ଲେଟବସ୍ତ୍ୱଠାରୁ କର୍ମଜୀବୀ ଗୋପାଳ ଗ୍ଲେଟବସ୍ତ୍ୱ ଚାରିମାସ ବଡ଼ । ଏମିତି ବି କହି ପାରନ୍ତି, ଏ ଦୁଇଟି ବ୍ୟକ୍ତିଙ୍କ ଭିତରେ ଚାରି କଲେଣ୍ଡରର ବ୍ୟବଧାନ ।

ଉଣେଇଶ ବର୍ଷର ଜଣେ ଯୁବକ କୃତିତ୍ୱ ସହ ମାଟ୍ରିକ ପାଶ୍ କରିବା ଆଜି ହୁଏତ କିଛି ବଡ଼ କଥା ନୁହେଁ, ମାତ୍ର ୧୯୩୫ ମସିହା ପାଇଁ ତାହା ନିଶ୍ଚିତ ଭାବେ ଉଲ୍ଲେଖନୀୟ । କାରଣ ତା' ପାଖରେ ପ୍ରତିବନ୍ଧକ ଅନେକ । ସାମାଜିକ ତଥା ପାରିବାରିକ ଦାୟିତ୍ୱ ବହନ କରି ଜୀବନ ଯାହାର ଝାଳ ପାହାଡ଼ ଉପରକୁ ଉଠୁଥିବା ସେ ଏକ ଭାରବାହୀ ଚମତ୍କାରି । ନୁହେଁତ ଆଉ କ'ଣ ? ଷଷ୍ଠ ଶ୍ରେଣୀରେ ପାଠ ପଢ଼ୁଥିବା ଏକ ନିର୍ବୋଧ କିଶୋରକୁ ବେଶ୍ ଚମତ୍କାର ଭାବେ ଭଣ୍ଡେଇ ଦେଇ ବାପା ତାଙ୍କର ଏ ସଂସାର ଛାଡ଼ି ଚାଲିଗଲେ । ଘରେ କିଛି ଅଭାବ ବି ନ ଥିଲା । ପୁଣି ତାଙ୍କର ସ୍ୱାଧୀନଚେତା ପିତା, ସେଟେଲ୍-

ମେଣ୍ଟ ଗୁଳକଣ ଗ୍ରୁଡ଼୍ .ସମ୍ବଲପୁର (ପଦ୍ମପୁର ଜମିଦାରୀ)ର ମାଣ୍ଡୋସିଲଠାରେ ଅନେକ ଗୃଷଜମି କିଣି ଭଲ ଗୃଷୀହେବାର ସ୍ୱପ୍ନ ଦେଖିଥିଲେ । ଗୋପାଳ ବାବୁଙ୍କ ଜୀବନ ନାଟକର ପ୍ରଥମ ଅଙ୍କର ଶେଷଦୃଶ୍ୟରେ ସେ ବଦାସ୍ୟ ନେବାପୂର୍ବରୁ ତାଙ୍କ ପଢ଼ାପାଇଁ ବେଶ୍ କିଛି ଅର୍ଥ ରଖିଯାଇଥିଲେ । ମାତ୍ର ତା'ର ପରିଣତି ହେଲା ଠିକ୍ ଫକୀରମୋହନଙ୍କ ଘରେଇ ବଣାକ ଗଳ୍ପ ଭଳି । ଜୀବନ ନାଟକର ଦ୍ୱିତୀୟ ଅଙ୍କର ପ୍ରଥମ ଦୃଶ୍ୟରେ ସେ ଶୂନ୍ୟହସ୍ତ ।

କିନ୍ତୁ ଏଥିରେ ପ୍ରଚ୍ଛନ୍ନ ସୁଫଳର ଇଙ୍ଗିତ ଥିଲା, ଏଇ ସଂଗ୍ରାମୀ ବ୍ୟକ୍ତିଙ୍କ ପାଇଁ ! ମି:ଇ: ପରୀକ୍ଷାରେ ସାରାଓଡ଼ିଶାରେ ପ୍ରଥମ ହୋଇଥିବା ଚପଳ କିଶୋରଟି ଜୀବନ ସନ୍ଧ୍ୟୁତ ବାଜି ଲଗି ବାରଂବାର ଖେଳ ଖେଳିବାକୁ ଚେଷ୍ଟା କଲେ । ପିଠିରେ ସାରା ପରିବାରର ବୋଝ । ହାଇସ୍କୁଲ ଜୀବନ ଆରମ୍ଭରୁ ଗୋଟାଏ ପାଦ କଟକ ସହରରେ ତ ଆର ପାଦଟା ଜଗତସିଂହପୁରର ପୁଟୁଣୋଗଡ଼ରେ । ( ଭଗବାନ ! ଭଲ ମଜା ଲଗାଇଛ ହେ ! ଏଇଟା କ'ଣ ଗୋଟା ଜୀବନ ? ନା, ବଁଚିବାର ଅନ୍ୟ ନାମ.... ଧେତ୍ ! କେଜାଣି କ'ଣ, ତମେ ଜାଣ । ) ମାଟ୍ରିକ୍‌ର ଅର୍ଡ଼ିଲଟାକୁ ଡ଼େଇଁଗଲେ ସେ । କିନ୍ତୁ କଲେଜ ଶିକ୍ଷା···? ଯହିଁ ବନ୍ଧୁତା ଯହିଁ ପ୍ରେମ ସୁନ୍ଦର' । ଜୀବନର ସେଇ ସୁନ୍ଦର ସୁଖକର ( ଯାହା ଲୋକେ କହନ୍ତି ) ମୁହୂର୍ତ୍ତରେ ହିଁ ଆରମ୍ଭ ହୋଇଗଲା ନିର୍ଧନ ଧାଉଡ଼ି । ଅନ୍ୱେଷଣରେ ଶେଷ ନାହିଁ । ଜୀବନ ପାଇଁ ଏକ ଅବଲମ୍ବନ ଲୋଡ଼ା, କିନ୍ତୁ କାହିଁ ? ଆଉ କେତେ ଦୂରରେ ?

ସେତେବେଳେ ସେହେଟାଥିଏଟ୍ ଥାଏ କଟକରେ—ଏବେ ଯେଉଁଠି ସିଟି-ହସ୍ପିଟାଲ ଅଛି । ଇଣ୍ଟରଭ୍ୟୁ ହେଲା ଚଳଆ କିରାଣୀ ଗୃକିରୀ ପାଇଁ । ବିଦ୍ୟା ଓ ଯୋଗ୍ୟତାରେ ସେ ସେକାମପାଇଁ ମନୋନୀତ ହେଲେ ମଧ୍ୟ ଅବିଦ୍ୟା ଓ ଭିନ୍ନ ଯୋଗ୍ୟତାର ଆବଶ୍ୟକତା ପଡ଼ିଲା ସେଠି ବେଶି । ହ'ହଜ ଭିତରେ ଗୃଳିଶ ଟଙ୍କା ଦର୍ଶନୀ ଦେବାକୁ ପଡ଼ିବ । ଇଏ ୧୯୩୭ ମସିହା କଥା । ସେତେବେଳେ ପ୍ରଚଣ୍ଡ ବ୍ରିଟିଶ ଶାସନ ବିରୁଦ୍ଧରେ ସ୍ୱର ଟେକିବାକୁ ଏତେ ସାହସ ଅବା କାହାର ଅଛି ।

ଦୌଡ଼ିଲେ ଗାଁକୁ ଟଙ୍କା ସ୍କଲଶିପର ସନ୍ଧାନରେ । ସେତେବେଳେ ସ୍କଲଶି
ଟଙ୍କା କିଛି କମ୍ କଥା ନୁହେଁ । ସେତିକ ଯୋଗାଡ଼କରି ଆସି ପହଞ୍ଚିଲି
ବେଳକୁ ବିଳମ୍ବିତ ଲଗ୍ନ—ଗାଡ଼ି ଅନ୍ୟ ଯାତ୍ରୀଙ୍କୁ ନେଇ ଚାଲିଯାଇ-
ଥିଲି । ପୁନଶ୍ଚ ସ୍ୱାସ୍ଥ୍ୟ-ନିର୍ଦ୍ଦେଶାଳୟରେ ଟାଇପିଷ୍ଟ ଇଣ୍ଟରଭ୍ୟୁ ।
ଜୀବନ ଓ ସମସ୍ତ ସତ୍ତ୍ୱକୁ ଯିଏ ପ୍ରତିମୁହୂର୍ତ୍ତରେ ମୁକାବିଲା କରୁଥିଲି,
ତାପାଇଁ ଏସବୁ ଇଣ୍ଟରଭ୍ୟୁ ଆଶ୍ଚର୍ଯ୍ୟଜନକ ଅବା ଦୁଶ୍ଚିନ୍ତା କେମିତି ?
ଇଣ୍ଟରଭ୍ୟୁରେ ମନୋନୀତ ହୋଇ କର୍ମଜୀବୀ ହେବାର ପ୍ରଥମ ସ୍ୱୀକୃତି
ଦେଲେ ଏଇଠି । ମାତ୍ର ସ୍ୱାସ୍ଥ୍ୟ ନିର୍ଦ୍ଦେଶାଳୟ ତାଙ୍କ ଶରୀର ପାଇଁ ହୋଇ
ପଡ଼ିଲା ଅସ୍ୱାସ୍ଥ୍ୟକର । ଟାଇପ୍ କରି ଚଲାପରେ, ଏପରିକି ଟାଇପ୍
କରୁଥିଲା ବେଳେ ହାତ ବାନ୍ଧିଲା—ଅସହ୍ୟ ଯନ୍ତ୍ରଣା । ଚାକିରୀକୁ 'ହେ
ବନ୍ଧୁ ବିଦାୟ' କହି ସେ ଚାଲି ଆସିଲେ ପୁଣିଥରେ ଖୋଲା ଆକାଶ
ତଳକୁ । ନୀଳ ଆକାଶର ତାରା ଗଣୁ ଗଣୁ, ଉତ୍ତପ୍ତ ସୂର୍ଯ୍ୟର ଅବହେଳିତ
ସତ୍ତ୍ୱ ଚାଲୁ ଚାଲୁ—ଆଖିରେ ପଡ଼ିଲା ଗୋଟାଏ ନୋଟିସ୍ । 'ଡିଷ୍ଟ୍ରିକ୍ଟ
ବୋର୍ଡରେ କର୍ମ ଖାଲି—ଇଣ୍ଟରଭ୍ୟୁ ତିନିଦିନ ପରେ' । ସେଦିନର
ରାଶି ନକ୍ଷତ୍ରର ଯୋଗାଯୋଗ କେମିତି କ'ଣ ଘଟିଥିଲା ମନେନାହିଁ,
ମାତ୍ର ଏଇ 'ଜିଲ୍ଲା ପରିଷଦ' ହିଁ ତାଙ୍କୁ ଧରି ରଖିଲା ଅନେକ ଦିନ
ଯାଏ—୧୯୩୭ରୁ ୧୯୬୪ ଯାଏ ।

## ଅନେକ ସ୍ମୃତି ଅନେକ :

କବି କହିଛନ୍ତି—'ସ୍ମୃତି ତ କଦାପି ନୁହେଁ ଫିଙ୍ଗିବାର, ପାରିଲେ
ମାନବ ଲଭନ୍ତା ନିସ୍ତାର' । ସେ ସ୍ମୃତି କଦାପି ଭୁଲିବାର ନୁହେଁ ।
ଲେଖକ ହେବାର ସଂଗୁପ୍ତ କାମନା ସେତେବେଳକୁ ହୃଦବାଗିଚାରେ ପରିସ୍ଫୁଟ
ହେବାକୁ ଚେଷ୍ଟାରେ ଥାଏ । ବିଶ୍ୱ ଆକାଶରେ ସେ ସମୟରେ ଦ୍ୱିତୀୟ
ବିଶ୍ୱଯୁଦ୍ଧର ଘନଘଟା । ଭାରତର National War Front ଗଢ଼ାଯାଇ
ଜାତି ତରଫରୁ ଇଂରେଜମାନଙ୍କୁ ସମର୍ଥନ କରାଯିବାର ସ୍ୱୀକୃତି ଦିଆ-
ଯାଉଥିଲା । ଇଂରେଜଙ୍କୁ ଦ୍ୱିତୀୟ ବିଶ୍ୱଯୁଦ୍ଧରେ ସମର୍ଥନ କଲେ ସେମାନେ
ଯୁଦ୍ଧପରେ ଆମ ସ୍ୱାଧୀନତା ହସ୍ତାନ୍ତର କରିବେ—ଏ ବାଣିଜ୍ୟିକ
ବୁଝାମଣା ହୋଇ ସାରିଥାଏ । ଓଡ଼ିଶାରେ 'ନ୍ୟାସନାଲ ଓ୍ୱାର୍ ଫ୍ରଣ୍ଟ'ର

ସଂଗଠକ ଥିଲେ ସୁପ୍ରତିଷ୍ଠିତ 'ମୁକୁର' ପତ୍ରିକାର ସଂପାଦକ ସାହିତ୍ୟିକ ବ୍ରଜସୁନ୍ଦର ଦାସ । ସେ ଜାତିର ଏହି ଆତ୍ମମୁଖ୍ୟକୁ ପାଲା ଦାସକାଠିଆ ଆଦି ସାହାଯ୍ୟରେ ଜନସାଧାରଣଙ୍କୁ ଜଣାଇବାର ବ୍ୟବସ୍ଥା କରୁଥାଆନ୍ତି । ପାଲା ଦାସକାଠିଆ ମାଧ୍ୟମଟି ମନମୁତାବକ ପ୍ରତିକ୍ରିୟା ସୃଷ୍ଟି କରି ନ ପାରିବାରୁ ସେ ଶେଷରେ ବିଜ୍ଞାପନ ଦେଲେ—ନ୍ୟାସନାଲ ଥ୍ୟାର ଫଣ୍ଡ ପାଇଁ ଅଭିନୟୋପଯୋଗୀ ଏକାଙ୍କିକା ଲେଖି ଦେଲେ ଆର୍ଥିକ ପୁରସ୍କାର ଦିଆଯିବ ।

ଏ ଘଟଣାଟି ଊଣଇଶ, ଏକତ୍ରିଶ ମସିହାର । ସେତେବେଳକୁ ଓଡ଼ିଆ ନାଟକ ଜଗତରେ ଅଶ୍ୱିନୀ କୁମାର ଓ କାଳୀଚରଣଙ୍କ ଭଳି ବରିଷ୍ଠ ବରିଷ୍ଠ ବଟବୃକ୍ଷ କାୟା ବିସ୍ତାରି କରି ଆସ୍ଥାନ ଜମେଇ ସାରି-ଥିଲେ । ସେମାନଙ୍କ ଛାୟାରେ ଯେ ଆଉ କୌଣସି ଉଦ୍ଭିଦ ଜଧେଇବ, ତାହା କେହି ଚିନ୍ତା କରି ପାରୁନଥିଲେ । ମାତ୍ର ମହୁଆ ନିଶାରେ ଯିଏ ମାତାଲ, ସେ ଭୁଲ୍ ଠିକ୍ କ'ଣ ଜାଣି ପାରେ ନାହିଁ । ନାଟ୍ୟକାର ହେବାର ଅଭିଳାଷ ଯାହା ମନରେ ଜାଗିଛି ତାହା ଏ ସାମାନ୍ୟ ପ୍ରତି-ବନ୍ଧକରେ ଅଟକି ଯିବ ବା କେମିତି ? ତାଙ୍କ ମନ ଭିତରେ ଆଶ୍ୱାସନା ଜନ୍ମିଲା—ବଡ଼ ଗଛ ମୁଣ୍ଡ ଟେକିଲେ ବୋଲି ଯେ ସାନ ଗଛ ଉଠିବ ନାହିଁ, ଏମିତି ତ କିଛି ନିୟମ ନାହିଁ । ସୃଜନ ସ୍ୱପ୍ନରେ ବିଭୋର ସ୍ରଷ୍ଟା ଗୋପାଳବାବୁ ଗୋଟିଏ ଏକାଙ୍କିକା ଲେଖିଲେ—'ସରଳା' । ପରେ ଅବଶ୍ୟ ଏହା 'ସହଧର୍ମିଣୀ' ନାଟକରେ ପରିଣତ ହୋଇଥିଲା । ଆଗ୍ରହର ସହିତ ସୃଷ୍ଟିଶୀଳ ହୋଇ ପଡ଼ିବାରୁ ମାତ୍ର ୩।୪ ଦିନ ଭିତରେ ଲେଖାଟି ଶେଷ ହୋଇଗଲା । ସେତେବେଳେ ଗୋପାଳବାବୁ ନିମ-ଚଉଡ଼ରେ ରହୁଥାନ୍ତି ଏବଂ ମୁକୁର ପ୍ରେସ ତଥା ବ୍ରଜସୁନ୍ଦର ବାବୁଙ୍କ ଅବସ୍ଥାନ ସେଇ ନିମଚଉଡ଼ରେ । ବ୍ରଜସୁନ୍ଦର ବାବୁ ଏତେ ପ୍ରତିଷ୍ଠିତ ଓ ପ୍ରତିପତ୍ତିଶାଳୀ ବ୍ୟକ୍ତି ଯେ, ସେ ପରିପାର୍ଶ୍ୱର ସମସ୍ତଙ୍କୁ ଚିହ୍ନିବା ସମ୍ଭବ ନୁହେଁ । କିନ୍ତୁ ଏକଥା କହିବା ଅନାବଶ୍ୟକ ଯେ ତାଙ୍କୁ ସମସ୍ତେ ଚିହ୍ନି ଥିଲେ ।

ଏକାଙ୍କିକା 'ସରଳା'କୁ ଲଜ୍ଜାମିଶ୍ରିତ ଭଙ୍ଗୀରେ ଜାକିଜୁକି ଯୁବକ ଗୋପାଳ ଶ୍ଳେଟସଙ୍ଗ ଯାଇ ପହଂଚିଲେ ମୁକୁର ପ୍ରେସ୍‌ରେ । ସେଇ

ଟିକଣାରେ ଲେଖା ଦାଖଲ କରିବାପାଇଁ ବିଜ୍ଞାପନ ଦିଆଯାଇ ଥାଏ । ବ୍ରଜସୁନ୍ଦର ବାବୁଙ୍କର ସାମ୍ନାସାମ୍ନି ହୋଇଗଲେ ସେ । ମନରେ ହଠାତ୍ ଜମାଟବନ୍ଧା ଭୟ । ସେଠୁ ଆଜି ଖସିଯିବାର ଉପାୟନାହିଁ । ଆହୁରି କେତେକ ଲୋକ ତାଙ୍କ ଚାରିପଟେ ବେଢି ଥାଆନ୍ତି । ଅଗତ୍ୟା ତାଙ୍କ ପ୍ରଶ୍ନର ଉତ୍ତର ଦେବାକୁ ହେଲା ସଂକୋଚ ଶୈଳୀରେ ।

ବ୍ରଜସୁନ୍ଦର—କୁଆଡ଼େ ଆସିଲ ?

ଗୋପାଳ—ନାଟକ ଦବାକୁ ।

ବ୍ରଜସୁନ୍ଦର—କି ନାଟକ ?

ଗୋପାଳ—ନ୍ୟାସନାଲ ଓ୍ୱାର ଫ୍ରଣ୍ଟ ତରଫରୁ ନାଟକ ଲେଖିବାପାଇଁ ବିଜ୍ଞାପନ ଦିଆ ଯାଇଥିଲା—

ବ୍ରଜସୁନ୍ଦର—ଆଚ୍ଛା, ଆଚ୍ଛା । ତମ ନାଁ କ'ଣ ?

ଗୋପାଳ—ଗୋପାଳ ସ୍ଲେଟବସ୍ତ ।

ବ୍ରଜସୁନ୍ଦର—ହଇହୋ ! ସ୍ଲେଟବସ୍ତ କ'ଣ ନାଟକ ଲେଖିବ ? ତମର ଖଣ୍ଡା ତରୁଆଲ୍ ଧରିବା କଥା । କଲମ କ'ଣ ଧରିଲଣି !

ଗୋପାଳ—(ସ୍ମିତ ହସି ତଳକୁ ମୁହଁ କଲେ ।)

ବ୍ରଜସୁନ୍ଦର—ହଉ, ନାଟକ ଲେଖିଚ ପଢ଼ । ପଢ଼ ଶୁଣିବା—

ନାଟକଖଣ୍ଡ ପ୍ରଥମ ଦୃଶ୍ୟ ଶେଷ ହେଲା ପରେ ବାଧ ରୁହନ୍ତି ପରେ ଗୋପାଳବାବୁ ଏକାଂକକାଟି ପଢ଼ିବାକୁ ଲାଗିଲେ । ବ୍ରଜସୁନ୍ଦର ବାବୁ ଆଖିବୁଜି ବସିରହିଲେ । 'ସଳଜା' ତାଙ୍କର ତିନିଟି ଦୃଶ୍ୟର ନାଟକ; ମାତ୍ର ଗୋଟିଏ ସେଟ୍‌ର କଥା । ଏଥିରେ ନାଟ୍ୟକାର ମୁଖ୍ୟତଃ କହିବାକୁ ଚାହିଁଥିଲେ—'ଜାପାନୀ ଆସୁ, ବ୍ରିଟିଶ ଆସୁ; ଆମ ଦେଶ ଆମର ହେଉ ।' ଜଣେ ଅଭିନେତାର ସ୍ୱରଲୟଧରି ସେ ପଢ଼ି ଚାଲିଲେ ନାଟକଟିକୁ । ଗୋଟିଏ ଦୃଶ୍ୟ ସରିଲେ ବେଳକୁ ସେ ଲକ୍ଷ୍ୟକଲେ ବ୍ରଜସୁନ୍ଦର ସେମିତି ଆଖିବୁଜି ବସି ରହିଛନ୍ତି । ହଲଚଲ ବି ହେଉ

ନାହାନ୍ତି । ଗୋପାଳବାବୁ ଡ଼ାକିଲେ ବୋଧହୁଏ ସେ ଶୋଇ ପଡ଼ିଲେଣି । ମାତ୍ର ଆକସ୍ମିକଭାବେ ଏକ ବିସ୍ଫୋରଣ ଘଟିଲା । ଗୋପାଳ ବାବୁ ପଢିବା ବନ୍ଦ କରିବା ସାଙ୍ଗେ ସାଙ୍ଗେ ସେ ଚାଙ୍କିକରି ଉଠିଲେ— 'ବନ୍ଦକଲେ କାହିଁକି ଗୋଷ୍ଟବାବୁ ! ପଢି ଯା'—ନପଢି ଆଉ ରହିବ ଅଛୁ ? ସବୁତକ ପଢ଼ା ସରିଲା । ଆନନ୍ଦ ଗଦ୍‌ଗଦ୍ ହୋଇ ବ୍ରହ୍ମାନନ୍ଦର ବାବୁ କହିଲେ—'ବାବା ! ଲେଖିଯା—ଜୀବନରେ କେବେ ବନ୍ଦ-କରିବୁନି କଲମ ।'

ଗୋପାଳବାବୁଙ୍କ ପାଇଁ ସେ କେବଳ ଆଶୀର୍ବାଦ ବର୍ଷା କଲେନି—'ସଲଳା'କୁ ପ୍ରଥମେ ଅଭିନୟ ହେବାକୁ ସୁଯୋଗ ଦେଲେ । ଭ୍ରାମ୍ୟମାଣ ଅନ୍ନପୂର୍ଣ୍ଣା ଏ'ଗ୍ରୁପ ଏହାକୁ ସଫଳତାର ସହିତ ଅଭିନୟ କଲେ ଏବଂ 'ସଲଳା'ର ଇଂରାଜୀ ଅନୁବାଦ କରାଯାଇ ଦିଲ୍ଲୀ ପଠାଇ-ବାର ବନ୍ଦୋବସ୍ତ କରାଗଲା । ଜଣେ ତରୁଣ ସୃଜନ-ସ୍ୱପ୍ନ-ବିଭୋର ସ୍ରଷ୍ଟା ପାଇଁ ଏତିକି ଆତ୍ମୀୟତା କିଛି କମ୍ ପ୍ରେରଣାପ୍ରଦ ନୁହେଁ । ସ୍ମୃତିର ଗନ୍ଧାଘରରେ ସେଇଥିପାଇଁ ଏହା ଅଭୁଲା—ଚିର ସ୍ମରଣୀୟ । ପୁଣି ଏହା ପ୍ରଥମ ପାହାଚର ପ୍ରୀତି-ପାର୍ବଣ । ପ୍ରଥମ ଭଲ ପାଇବା ତ ସାରା ଜୀବନ ପାଇଁ ପାଥେୟ ହୋଇପଡ଼େ । ପରେ ପରେ ଏମିତି ଅନେକ ସ୍ମୃତି ଜୀବନର ଯାଦୁଘରେ ସାଇତା ହେଲା ।

ଆଉ ଥରକର ସ୍ମୃତି···

ଏବେ ବି ମନେ ଅଛି ସେ ମୁହୂର୍ତ୍ତର କଥା । ବେଳେବେଳେ ମଣିଷ, ଗୋଟାଏ ମୁହୂର୍ତ୍ତକ ପାଇଁ ହଜିପଡ଼େ, ନିଜକୁ ଭୁଲିଯାଏ । ଭବିଷ୍ୟତର କେଉଁ ସମୀକ୍ଷାକାରୀ ଲଗ୍ନରେ ସେ ସମୟଟା କଥା ମନେ ପକାଇ ହସେ; ନିଜ ପାଖରେ ନିଜେ ଚକିତ ହୁଏ । ସେମିତିଆ ମୁହୂର୍ତ୍ତ ୧୯୫୭ର । ଏହି ବର୍ଷ ସେପ୍‌ଟେମ୍ବରମାସରେ ଦିଲ୍ଲୀରେ ହେଲା ଭାରତୀୟ ନାଟ୍ୟକାର ଓ ଶିଳ୍ପୀ ସମାବେଶ । ଭାରତରେ ଧାରାବାହିକ ନାଟକ ଲେଖି ଗୋପାଳବାବୁ ସୁପରିଚିତ । ତାଙ୍କୁ ହିଁ ବଛା ହେଲା ଓଡ଼ିଶାର ପ୍ରତିନିଧି ହିସାବରେ । ଦିଲ୍ଲୀରେ ହେଲା ସାରସ୍ୱତ ମିଳନ । ସେ ସମାବେଶରେ ଏକାଠି ହେବା କି ଯେ ଆନନ୍ଦ, କଥାରେ ପ୍ରକାଶ କରି

ହେବନାହିଁ । ବିଭିନ୍ନ ଆଲୋଚନାଚକ୍ରରେ ସେ ସକ୍ରିୟ ଅଂଶଗ୍ରହଣ କରି ଡାଇରେକ୍ଟର ଜେନେରାଲଙ୍କ ଦୃଷ୍ଟି ଆକର୍ଷଣ କଲେ । ତା'ପୂର୍ବରୁ ଅବଶ୍ୟ ତାଙ୍କ ଲେଖା ଅନୁଦିତ ହୋଇ ଦିଲ୍ଲୀରେ ପହଂଚି ସାରିଥିଲା । ଡାଇରେକ୍ଟର ଜେନେରାଲ ସମସ୍ତେ ଲଞ୍ଚ ଖାଉଥିଲାବେଳେ ଗୋପାଳ ବାବୁଙ୍କୁ ଡକାଇ ପଠାଇଲେ । ସେ ତାଙ୍କର ଚାକିରି ଓ ସାଂପ୍ରତିକ ଅବସ୍ଥିତି ଶୁଣି ଶୁଣି କହିଲେ—ଆପଣ A.I.R. ରେ ଯୋଗ ଦେଉ ନାହାନ୍ତି କାହିଁକି ? We want your service. ଆମେ କେତେ ଆପଣଙ୍କୁ ଟଙ୍କା ଦେଇପାରିବୁ, ଠିକ୍ କରି କହି ପାରୁନ । ତେବେ ସର୍ବୋଚ୍ଚ ଯାହା ବ୍ୟବସ୍ଥାଥିବ ତାହାହିଁ ଦିଆଯିବ ।"

ଗୋପାଳ ବାବୁ ପ୍ରତିବାଦ କରି ନ ଥିଲେ କି 'ହଁ' ମଧ୍ୟ କହି ନ ଥିଲେ । ଏହାର ଦୁଇ ମାସପରେ ସେ କଟକ ରେଡ଼ିଓ ଷ୍ଟେସନରେ ସ୍କ୍ରିପ୍ଟ ରାଇଟର ହିସାବରେ ନିଯୁକ୍ତି ପାଇଥିଲେ ବିନା ଦରଖାସ୍ତରେ । ଏଇଠୁ ଜୀବନର ଧାରା ତ ଭିନ୍ନ ମୁଖୀ ହେଲା ।

## ବହିଯାଏ ରେ ଗଙ୍ଗା :

ଜୀବନ-ଜାହ୍ନବୀର ଧାରାରେ ଅନେକ ତରଙ୍ଗ—ଅନେକ ମୂର୍ଚ୍ଛନା । ଜାହ୍ନବୀର ପବିତ୍ର ଧାରାରେ ନାନାଦି କୁତ୍ସିତ ପଦାର୍ଥ ଫିଙ୍ଗି ଆମେ ହିଁ ତାକୁ ଆବିଳ କରିବାକୁ ଚେଷ୍ଟା କରିଚୁ । ମାତ୍ର ଗଙ୍ଗା, ଚିରଦିନ ସେଇ ପତିତ-ପାବନୀ ଗଙ୍ଗା । ଯୁଗ ଯୁଗ ଧରି ସେ ବହି ଚାଲିଚି । କାହାରି ଭଲ ମନ୍ଦକୁ ସେ ଅପେକ୍ଷା ରଖିନ । ପ୍ରବହମାନତା-ହିଁ ଧର୍ମ ।

ଗୋପାଳବାବୁଙ୍କ ପ୍ରବହମାନ ଜୀବନ-ନଦୀର କୂଳରେ ଅନେକ କାହାଣୀ । ଖାଣ୍ଟି ସ୍ୱାଧୀନଚେତା ବ୍ୟକ୍ତି ଗୋଟାଏ ଜାଗାରେ ସ୍ଥିର ହୋଇ ରହି ପାରେନା । ୧୯୪୪ ସାଲ ଯାଏ ଗୋପାଳବାବୁ ଡିଷ୍ଟ୍ରିକ୍ଟ ବୋର୍ଡରେ ରହିଲେ । ଅନ୍ୟର ଆଧିପତ୍ୟ ଓ ବଚସ୍କରତାର ଆବଶ୍ୟକ ମୁହୂର୍ତ୍ତରେ ସେ ସେହି ଚାକିରି ଛାଡ଼ି ଦେଲେ । ସ୍ୱାଧୀନ ବ୍ୟବସାୟ କରିବାକୁ ତାଙ୍କର ପ୍ରବଳ ଇଚ୍ଛାଥିଲା । ସେ ଚାହିଁଲେ ସୁଦୂର

ମାଣ୍ଡାସିଲ୍‌କୁ । ତାହା ଥିଲା ସେଣ୍ଟ୍ରାଲ ପ୍ରଦେଶର ସୀମାରେ । ଛଅବର୍ଷ ସେ ସେଇଠି ରହିଲେ । ସେଇଠି, ଗୋଟିଏ ସ୍ୱାଧୀନଚେତା ପିତାର ଦୁଇଟି ପ୍ରତିଭାବାନ୍ ସନ୍ତାନ ଭୂମିଷ୍ଠ ହେଲେ—ଦେବଦାସୀ ଓ କସ୍ତୁରୀ । ୧୯୪୭ରେ ସେ ଫେରିଲେ ନିଜ ଜନ୍ମସ୍ଥଳୀ ପୁରୁଣାଗଡକୁ । ଗୃହୀ ହିସାବରେ ଗୋପାଳବାବୁ ଥିଲେ ଖୁବ୍ ଉଦ୍ୟୋଗୀ । ତା'ଛଡ଼ା ପୁରୁଣାଗଡରେ ବର୍ଷେ ରହିବା ଭିତରେ ସେ ଚଳାଇଲେ ଗୋଟିଏ ମାଇନର ସ୍କୁଲ ପ୍ରତିଷ୍ଠା କରିବାପାଇଁ । ୧୯୪୯ରେ ସେ ଏହି କାମରେ ସଫଳ ହୋଇଥିଲେ ।

ସେତିକବେଳକୁ ମାଳମଣି ପ୍ରଧାନ ଥାଆନ୍ତି ଡିଷ୍ଟ୍ରିକ୍ଟ ବୋର୍ଡର ଚେୟାରମ୍ୟାନ । ତାଙ୍କର ଗୋପାଳବାବୁଙ୍କ ସହ ସାକ୍ଷାତ ହେଲା ଏଇ ସ୍କୁଲ ସଂସ୍ଥାପନ କାର୍ଯ୍ୟବେଳେ । ମାଳମଣି ପ୍ରଧାନ ଭାରି ହୃଦୟବାନ ଲୋକ । ସେ ଗୋପାଳବାବୁଙ୍କୁ ବାଧ୍ୟକଲେ ପୁଣି ଡିଷ୍ଟ୍ରିକ୍ଟ ବୋର୍ଡରେ ଜଏନ୍ କରିବାକୁ । ତାହାହିଁ ହେଲା । ୧୯୫୭ ସାଲଯାଏ ପୁଣି ଆରମ୍ଭ ହୋଇଗଲା ତାଙ୍କର ଅବ୍ୟାହତ କର୍ମମୟ ଜୀବନ । ମାତ୍ର ଏଇବର୍ଷ ଗୋପାଳବାବୁଙ୍କୁ ପଦୋନ୍ନତି ଦିଆଯାଇ ବିଭିନ୍ନ ଅଂଚଳକୁ ପଠାଗଲା । (୧) ଯକ୍ଷ୍ମା ହସପିଟାଲର ସୁପରିନ୍‌ଟେଣ୍ଡେଣ୍ଟ ଅଫିସ୍ କଳାହାଣ୍ଡିକୁ—'ନା, ଯିବି ନାହିଁ' । (୨) P.W.D. ଏକ୍‌ଜିକ୍ୟୁଟିଭ୍ ଇଂଜିନିୟର ଅଫିସ ରାଇରଙ୍ଗପୁରକୁ ଗ୍ରେଡ଼ ଓ୍ୱାନକରି । 'ନା, ଯିବି ନାହିଁ' । ଏମିତି କେତେଟା ବଦଳି । କିନ୍ତୁ ସେ କୁଆଡ଼େ ଯିବାକୁ ନାରାଜ । ସେତେବେଳକୁ ନାଟ୍ୟକାର ହିସାବରେ ତାଙ୍କ ଚେର କଟକରେ ବହୁ ଗଭୀରତାକୁ ସ୍ପର୍ଶ କରି ସାରିଥିଲା । ତେଣୁ କଟକ ଛାଡ଼ି ଅନ୍ୟତ୍ର କୁଆଡ଼େ ଯିବାକୁ ସେ ଇଚ୍ଛା କରୁନଥିଲେ । ଅକସ୍ମାତ୍ ଏହି ବର୍ଷ ଡିଷ୍ଟ୍ରିକ୍ଟ ବୋର୍ଡକୁ ସରକାର ହାତକୁ ନେଇଗଲେ । ତା'ପରେ ତ ସ୍ଥାନାନ୍ତର ଯୋଗ ନଷ୍ଟପ୍ରାୟ ।

ଛୁଟିରେ ରହିବେ କି ଚାକିରି ଛାଡ଼ିବେ, ଏଇ ଦ୍ୱନ୍ଦ୍ୱ ତାଙ୍କ ମନକୁ ଆଚ୍ଛନ୍ନକରି ରଖିଲା । ମାତ୍ର ବିଧାତାର ନିର୍ଦ୍ଦେଶ ବଡ଼ ବିଚିତ୍ର । ସେ ଦିଲ୍ଲୀର ସମାବେଶରେ ଯୋଗଦେଇ ଫେରିବା ପରେ ତାଙ୍କପାଇଁ କଟକରେ

ସ୍ଥାୟୀ ଷ୍ଟେସନର ବନ୍ଦୋବସ୍ତ ହୋଇ ସାରିଥିଲା । କଟକରେ ବେତାର କେନ୍ଦ୍ର ସ୍ଥାପିତ ହୋଇଥିଲା ୧୯୪୮ରେ । ସେଇଦିନୁ ଏହା କ୍ରମଶଃ ଦ୍ରୁତତା ପ୍ରାପ୍ତି ଆଡ଼କୁ ଅଗ୍ରସର ହେଉଥିଲା । ୧୯୫୭ ଡିସେମ୍ବରରେ ଗୋପାଳ-ବାବୁ କଟକ ବେତାର କେନ୍ଦ୍ରରେ ଯୋଗଦେଲେ । ସେଇଦିନଠାରୁ ସେ ୧୯୭୫ ଯାଏ ଆକାଶବାଣୀ ଗଣମାଧ୍ୟମକୁ ସୁଶ୍ରାବ୍ୟ କରିବାକୁ ଚେଷ୍ଟା କରି ଆସିଛନ୍ତି । ଆଉ କିଛି ନ ହେଉ—ନାଟକ ବିଭାଗ ତାଙ୍କଦ୍ୱାରା ସମୃଦ୍ଧ ହୋଇଛି, ଏହା ଅବିସମ୍ବାଦିତ । ୧୯୭୫ରୁ ଅବସର ଗ୍ରହଣ କରିବା ପରେ ଏବେବି ତାଙ୍କର ସୃଜନ-ସଂଗ୍ରାମ ଅବ୍ୟାହତ ।

କର୍ମବାଦୀ ଭାରତୀୟମାନେ କର୍ମ ଭିତରୁ ଆନନ୍ଦ ପାଆନ୍ତି । ବିଚ୍ଛିନ୍ନ ଧାରାରେ ଯାଇ ଆନନ୍ଦ ଲାଭ କରିବା ଆମ ଜାତୀୟ ଜୀବନର ବୈଶିଷ୍ଟ୍ୟ ନୁହେଁ । ଗୋପାଳବାବୁ ଜଣେ ଖାଣ୍ଟି ଭାରତୀୟ । ସେ କର୍ମରୁ ହିଁ ଆନନ୍ଦ ଲାଭ କରନ୍ତି । ତାଙ୍କର ସେଇ ଧ୍ୟାନଗମ୍ଭୀର ମୂର୍ତ୍ତିକୁ ଦେଖିଲେ ଯେ କେହି ଭାବିବ, ଇଏ ଜଣେ ବେରସିକ ଶୁଷ୍କ ହୃଦୟର ଲୋକ; ନିଶ୍ଚୟ ଭାରି ବଦରାଗୀ । ଗୋପାଳବାବୁ ତାଙ୍କ ଯୌବନରେ କି ପ୍ରକାର ରସିକତା କରୁଥିଲେ ତାହାତ ଜଣା ନାହିଁ—ମାତ୍ର ତାଙ୍କ ଜୀବନର ଉତ୍ତୀର୍ଣ୍ଣ ଅପରାହ୍ନରେ, ଯିଏ ତାଙ୍କ ସହିତ ମିଶିଛି, ସେ ଜାଣିଛି—ଗୋପାଳ ବାବୁ କେଡ଼େ ହୃଦୟଖୋଲା ଲୋକ । ନାଟକରେ ହାସ୍ୟରସ ଅବତାରଣା କଲାବେଳେ ସେ କେବଳ ହସେଇ ହସେଇ ବେଦମ୍ କରି ଦିଅନ୍ତି—ବାସ୍ତବ ଜୀବନରେ ସେ ବି ସେଇୟା । ଜ୍ଞାନଦୀପ୍ତ ବ୍ୟକ୍ତିତ୍ୱ ନିକଟରେ ତାଙ୍କର ଗମ୍ଭୀରତା ଯେମିତି ଶୋଭାପାଏ, ସେଇଭଳି ହୃଦ୍ୟ-ହୁଏ ତାଙ୍କ ଶିଶୁସୁଲଭ ସରଳତା । ବୋଧହୁଏ ତାହା ନ ହୋଇଥିଲେ ସେ ଜଣେ ସାର୍ଥକ ସ୍ରଷ୍ଟା ହୋଇପାରି ନ ଥାନ୍ତେ ।

## ନଟ ନୁହେଁ ନାଟକକାର :

ପୃଥିବୀପ୍ରସିଦ୍ଧ ନାଟ୍ୟକାର ସେକ୍ସପିଅର ପ୍ରଥମେ ଥିଲେ ନାଟୁଆପିଲା—ପରେ ହେଲେ ନାଟକକାର । ଅଭିନୟ ସହିତ ନିବିଡ଼ ଭାବେ ସଂପୃକ୍ତ ହେବା ଫଳରେ ତାଙ୍କ ନାଟକ ଅଭିନୟ ଉପଯୋଗୀ ଏବଂ ହୃଦ୍ୟ ହୋଇ ପାରିଥିଲା । ଯେଉଁଠି ନାଟ୍ୟକାରଙ୍କର ମଞ୍ଚ ସଂପର୍କ

ନାହିଁ, ଯେଉଁଠି ସେ ବିଖ୍ୟାତ ସାହିତ୍ୟିକ ହୋଇପାରନ୍ତି; ମାତ୍ର ଯଥାର୍ଥତଃ ନାଟକକାର ହୋଇ ପାରନ୍ତି ନାହିଁ । ରଙ୍ଗମଞ୍ଚର ସମସ୍ୟା, ଅଭିନୟ-ଉପଯୋଗୀ ସଂଳାପ ଓ ଅଙ୍କ ଦୃଶ୍ୟସର୍ଜ୍ଜନା ପ୍ରତି ସାହିତ୍ୟିକ—ନାଟ୍ୟକାର ସଚେତନ ହୋଇ ପାରି ନ ଥାଏ । ମୁଖ୍ୟତଃ ସାହିତ୍ୟ ଦୃଷ୍ଟିରୁ ସେ ସୃଷ୍ଟି କରିଯାଆନ୍ତି;—ଏକ ପ୍ରାୟୋଗିକ କଳା ଦୃଷ୍ଟିରୁ ବିଚାର କରି ନ ଥାନ୍ତି । ଯେଉଁ କ୍ଷେତ୍ରରେ ନାଟକକାର ଓ ମଞ୍ଚ ଅଭିନ୍ନ ହୋଇ ପଡ଼ନ୍ତି, ସେଇଠି ହିଁ ସଫଳ ନାଟକର ଜନ୍ମ । ଗୋପାଳବାବୁ ଆଗେ ନଟ ସାଜିଛନ୍ତି—ତା ପରେ ନାଟକକାର । ପିଲା ଦିନରୁ ଯାତ୍ରା, ଲୀଳା ଓ ନାଟକ ପ୍ରତି ତାଙ୍କର ଥିଲା ପ୍ରବଳ ଝୁଙ୍କ । ଏଇ ନିଶା ଜୀବନର ଅପରିହାର୍ଯ୍ୟ ଅଙ୍ଗ ହୋଇ ପଡ଼ିଲା ତାଙ୍କର କଟକ ଅବସ୍ଥାନ କାଳରେ । ବିଭିନ୍ନ ସ୍ଥାୟୀ ଅସ୍ଥାୟୀ ରଙ୍ଗମଞ୍ଚରେ ନାଟକ ଦେଖି ଦେଖି ଅଭିନୟ କରିବାକୁ ତାଙ୍କର ମନ ବଳିଲା ।

ଜୀବିକା ଅନ୍ୱେଷଣରେ କଟକରେ ଅବସ୍ଥାନ କରୁଥିବା ସମୟରେ ତାଙ୍କର 'ଭାରତୀ ଥିଏଟର' ସହିତ ବିଶେଷ ଘନିଷ୍ଠତା ବଢ଼ି ଯାଇଥିଲା । ଏହା ମୁଖ୍ୟତଃ ଥିଲା ଏକ 'ଅସ୍ଥାୟୀ ସୌଖିନ ମଞ୍ଚ' । ଏଠାରେ ବଙ୍ଗଳା ଓ ହିନ୍ଦୀ ଅନୂଦିତ ନାଟକ ବିଶେଷଭାବେ ଅଭିନୀତ ହେଉଥିଲା । ଗୋପାଳବାବୁ ପ୍ରାଥମିକ ପର୍ଯ୍ୟାୟରେ କେତୋଟି ଅନୁବାଦ ନାଟକରେ ହାତ ଦେଇଥିଲେ । ଯଥା:—ସିନ୍ଦୂରଦାଗ (ସିନ୍ଥେସିନ୍ଦୁର), ପତିତା ଇତ୍ୟାଦି । ଏଥିରେ ସେ ଅଭିନୟ କରିବା ଆରମ୍ଭ କରି ଦେଇଥିଲେ । ଅନ୍ୟତମ ବିଶିଷ୍ଟ ନାଟ୍ୟକାର ରାମଚନ୍ଦ୍ର ମିଶ୍ରଙ୍କ 'ଅଭିମାନ' ( ଯାହାକି ପରେ 'ମୁଲିଆ' ନାଟକରେ ପରିଣତ ହେଲା) ନାଟକରେ ଗୋପାଳବାବୁ ମୁଖ୍ୟନାୟକ (Hero) ଭୂମିକାରେ ଅଭିନୟ କରିଥିଲେ । ଏହି ଅଭିନେତା ସାଜିବାକାଳରେ ତାଙ୍କ ଭିତରେ ବିକଶିତ ହୋଇ ଉଠୁଥିବା ସୃଜନ ପ୍ରତିଭା ଗୁମୁରି ଉଠୁଥିଲା । ନିଜସ୍ୱ ଚିନ୍ତାଧାରା ଅନେକଥର ବହିଃପ୍ରକାଶିତ ହେଉଥିଲା । ନାଟକରେ ସଂଳାପ ପରିବର୍ତ୍ତନରେ ସେ ଅନେକ ସ୍ଥଳରେ ଭାଗୀଦାର ହୋଇ ପଡୁଥିଲେ ।

ଗୋପାଳବାବୁ ସେତେବେଳେ କଟକସ୍ଥ ବମଲା ମେସ୍‌ରେ ରହୁଥିଲେ । ତାଙ୍କ ସାଙ୍ଗରେ ରହୁଥିଲେ ଇଂରାଜୀ ଶିକ୍ଷାବିତ୍ କାର୍ତ୍ତିକ ବଡ଼ାଗ୍ର ପଟ୍ଟନାୟକ । ସେ ଗୋପାଳବାବୁଙ୍କୁ ସବୁବେଳେ ବାଧ୍ୟକରୁଥିଲେ ନିଜେ ନାଟକ ଲେଖିବାକୁ । ଓଡ଼ିଆ ନାଟକର ଚରିତ୍ର ଓ ସଂଳାପ କ୍ଷେତ୍ରରେ ପରିବର୍ତ୍ତନ ଆଣିବାକୁ ସେ ବରାବର କହୁଥିଲେ । ଏପରିକି ସେ ବହୁ ଇଂରାଜୀ ନାଟକ ଆଣି ତାଙ୍କୁ ପଢ଼ିବାପାଇଁ ଗୋପାଳ ବାବୁଙ୍କୁ ଉଦ୍‌ବୋଧିତ କରୁଥିଲେ । ଦିନେ ସେ ହଠାତ୍ ମତ ଦେଲେ—'ଗୋପାଳ ବାବୁ ! ତମେ ଲେଖିଲ; ଦୁଇଟି ମଫସଲୀ ଝିଅ ଷ୍ଟେଜକୁ ସିଗାରେଟ୍ ଟାଣି ଟାଣି ଆସୁଛନ୍ତି । ଏମିତିଆ ଆଶ୍ଚର୍ଯ୍ୟ ଦୃଶ୍ୟ ଅବତାରଣା କର ଏବଂ ତା'ର ଯୌକ୍ତିକ କାରଣ ଥୁଆ । ଲେଖ ଏମିତିଆ କଥା । ଏଇ ପ୍ରେରଣା ବୋଧହୁଏ ନିଜସ୍ୱ କଥା କହିବାକୁ ତାଙ୍କପାଇଁ ସୁଯୋଗ ସୃଷ୍ଟି କଲା । ତା'ର ପରିଣତିରେ ଏବଂ ସମୟର ଆହ୍ୱାନରେ ସୃଷ୍ଟି ହେଲା 'ସକାଳ' । ଏଇ 'ସକାଳ' ବହୁ ପରିବର୍ତ୍ତନ ଓ ପରିବର୍ଦ୍ଧନ ପରେ ନାମାନ୍ତରିତ ହେଲା—'ସହଧର୍ମିଣୀ' । ୧୯୮୨ ମସିହାରେ ଏହା ଅଭିନୀତ ହେଲାବେଳେ ଦର୍ଶକ ମଞ୍ଚରେ ଥିଲେ ପାରଳା ମହାରାଜା । ସେ ନାଟକ ଦେଖି සାରିବାପରେ 'ଖୁବ୍ ଭଲ ଲେଖିଛ' ବୋଲି କହି ତାଙ୍କ ଘରକୁ ପରଦିନ ଯିବାପାଇଁ କହିଥିଲେ । ଏବେ ଯେଉଁଠି ଟେଲିଭିଜନ କେନ୍ଦ୍ର ହୋଇଛି, ସେଇଠି ଥିଲା ତାଙ୍କ କୋଠି । ଗୋପାଳବାବୁ ପରଦିନ ତାଙ୍କ ଘରକୁ ଗଲାରୁ ସେ ତାଙ୍କୁ ଶହେଟଙ୍କା ପୁରସ୍କାର ସ୍ୱରୂପ ପ୍ରଦାନ କରିଥିଲେ ।

୧୯୪୭ରେ ସେ ଲେଖିଲେ 'ଫେରିଆ' । ଠିକ୍ ଏହି ନାଟକ ସୃଷ୍ଟିର କିଛିଦିନ ପୂର୍ବରୁ ଗାନ୍ଧୀ-ଜିନ୍ନା-ମହତାବ୍ ଆଦି ଜନନାୟକମାନେ ଜେଲରୁ ଫେରିଥାଆନ୍ତି । ଗାନ୍ଧୀଜୀଙ୍କ ବହୁ ପୂର୍ବର ଶିକ୍ଷାଧାରା—'go back to village'ର ପୁନରାବୃତ୍ତି ଘଟୁଥାଏ ଏହି କାଳରେ । ଗ୍ରାମକୁ ଫେରି ଚାଲ ଓ ଜେଲ୍ ଫେରନ୍ତା ଘଟଣାଚକ୍ରହିଁ 'ଫେରିଆ'ର ପରିକଳ୍ପନା । ଏହା ଏକାଙ୍କିକା ନାଟକ ଥିଲା । ପରେ ତାହାକୁ କାଟଛାଣ୍ଟ କରି ଷଡ଼ବ୍ୟ ଭାବଧର୍ମୀ ନାଟକରେ ପରିଣତ କଲେ ସେ । ଏହି ନାଟକ ତିନିମାସ ଧରି ଅଭିନୀତ ହେଲା । 'ଫେରିଆ' ଉପରେ ମନ୍ତବ୍ୟ

ପ୍ରକାଶ କରି 'ଉଗର' ପତ୍ରିକାରେ ଏକ ଲେଖା ଲେଖିଥିଲେ ପଣ୍ଡିତ ରାମ ପଟ୍ଟନାୟକ । ତାଙ୍କ ମତରେ 'ଫେଶିଆ' ନାଟକର ସଂଳାପ ବାରଂବାର ଜର୍ଜ ବର୍ଣ୍ଣାର୍ଡ଼ଶ'ଙ୍କୁ ସ୍ମରଣ କରାଉଛି । ଏବେ କୌଣସି ନାଟ୍ୟକାରଙ୍କ ଉଦ୍ଦେଶ୍ୟରେ ଏଭଳି ମନ୍ତବ୍ୟ ପ୍ରକାଶ କଲେ ସେ ନିଜକୁ ଗୌରବାନ୍ୱିତ ମନେକରିବେ । କାରଣ ତାହାର ତାଙ୍କର ଶ୍ରେଷ୍ଠତ୍ୱ ଓ ସାର୍ବଜନୀନତା ପ୍ରତିପାଦିତ ହେଉଥିବା ବୁଝାପଡ଼େ । ମାତ୍ର ସେତେବେଳେ ଲୋକେ ବୁଝିଲେ—ଏହା ଶ'ଙ୍କ ସଂଳାପର ନକଲ ବା ଶ୍ଳେଷ । ନାଟ୍ୟକାର ଗୋପାଳଛୋଟରାୟ ନିଜେ କହନ୍ତି, ସେ ସେପର୍ଯ୍ୟନ୍ତ ଶ'ଙ୍କ ବହି ପଢ଼ିବା ତ ଦୂରର କଥା—ଦେଖିବି ନଥିଲେ ।

ମାତ୍ର ଏକଥା ନିଶ୍ଚିତ, ଓଡ଼ିଆ ନାଟକରେ ଜୀବନଧର୍ମୀ ସଂଳାପ-ସୃଷ୍ଟିର ଗୌରବ ଯଦି କାହାକୁ ଦିଆଯାଏ, ସେ ହେବେ ଗୋପାଳ ଛୋଟରାୟ । ତାଙ୍କ ପୂର୍ବରୁ ଏଭଳି ଗୌରବମୟ ସମ୍ମାନ ଓଡ଼ିଆ ନାଟକକୁ କେହି ଦେଇ ପାରିନାହାନ୍ତି । ସଂଳାପର ଯାଦୁକର ସେ । ତା'ର ନମୁନା ଖୋଜିବାକୁ ବସିଲେ ୧୯୫୬ ମସିହାର ନାଟକ 'ଭରସା' ନିକଟରେ ପହଞ୍ଚିବା ଉଚିତ । ଅଧିକ ଆଗକୁ ନ ଗଲେ ବି ଚଳିବ । ଶିଳ୍ପୀ ଜୀବନର ସମସ୍ୟାକୁ କେନ୍ଦ୍ରକରି ଏଇ ନାଟକଟି ରଚିତ । ପ୍ରଥମତଃ ଏହାର ନାଁ ଥିଲା 'ଶିଳ୍ପୀ' ଏବଂ ନାଟକର ମଞ୍ଚାୟନ ପାଇଁ ସେ ଅନ୍ନପୂର୍ଣ୍ଣା ରଙ୍ଗମଞ୍ଚର ହାରସ୍ଥ ହୋଇଥିଲେ । ମାତ୍ର କେତେକ କାରଣରୁ ପରିଚାଳକଙ୍କ ସହିତ ସହମତ ହୋଇ ନ ପାରିବାରୁ ସେ ପାଣ୍ଡୁଲିପିଟି ଧରି ଫେରିଆସୁଥିଲେ । ବାଟରେ ନରସିଂହ ମହାପାତ୍ରଙ୍କ ସାଙ୍ଗରେ ଦେଖାହେଲା । ସେତେବେଳକୁ 'ଓଡ଼ିଶା ଥିଏଟର୍ସ'ର ଶବ ଉପରେ 'ଜନତା ରଙ୍ଗମଞ୍ଚ' ମୁଣ୍ଡ ଟେକି ଆସୁଥିଲା । ତାଙ୍କୁ 'ଜନତା ରଙ୍ଗମଞ୍ଚ'କୁ ଟାଣିନେଲେ ସେ । ସେଇଠି 'ଶିଳ୍ପୀ' 'ଭରସା'ରେ ନାମାନ୍ତରିତ ହୋଇ ଶତାଧିକ ରଜନୀ ଅଭିନୀତ ହେଲା । 'ଭରସା' ଓଡ଼ିଆ କଳାକାରଙ୍କୁ କଳାକୁ ଜୀବିକା କରିବାର ଭରସା ଦେଲା—ମଞ୍ଚକୁ ବ୍ୟବସାୟିକ କରି ବଞ୍ଚିବାର ଭରସା ଦେଲା—ଗୋପାଳବାବୁଙ୍କ ନାଟ୍ୟକାର ଜୀବନର ପ୍ରତିଷ୍ଠାପାଇଁ ଭରସା ଦେଲା । ବାସ୍ତବରେ ସମସ୍ତଙ୍କୁ ଭରସା ଦେଲା ଏଇ ନାଟକ ।

ତା'ପରେ ଅଭ୍ୟୁଦୟ ଘଟିଲା ବହୁଳଯଶା ଗୋପାଳ ଛୋଟ-ରାୟଙ୍କର । ସେ ଲେଖିଥିଲେ ଅନେକ ନାଟକ । ଲେଖମା ତାଙ୍କର ବୋଲି ମାନିଲା । 'ଶଙ୍ଖାସିନ୍ଦୂର', 'ପରକଲମ', 'ନଷ୍ଟ ଉର୍ବଶୀ', 'ସାଧନା', 'ଅର୍ଦ୍ଧାଙ୍ଗିନୀ', 'ଅଗ୍ନିଗିରିରସ୍ୱର୍ଗ', 'ନୂଆବୋଉ', ଘଟକ ଓ କ୍ଷୁଦ୍ର ନାଟକ 'ହେମ୍ୱାଳୟ' ଇତ୍ୟାଦି । ୧୯୫୪ରେ ଲେଖାଯାଇଥିବା 'ପରକଲମ' ନାଟ୍ୟକାର ଗୋପାଳ ଛୋଟରାୟଙ୍କ ପ୍ରତିଭାକୁ ଟାଣି ନେଇଥିଲା ଦିଲ୍ଲୀ ସାପ୍ତାଭବନକୁ । ଏ ନାଟକର ବାଣୀ ସମସାମୟିକ ରାଜନୈତିକ ଚେତନା ଉପରେ ପ୍ରତିଷ୍ଠିତ । ୧୯୫୨ରେ ବଙ୍ଗଳାରୁ ଦୁର୍ଭିକ୍ଷର ଝଲକ ପ୍ରଲମ୍ବିତ ହୋଇ ଆସିଥିଲା ଉତ୍ତର ଓଡ଼ିଶା ଯାଏ । ଲେଖକ ବଜ୍ର ନିର୍ଘୋଷ କଣ୍ଠରେ ପ୍ରକାଶ କରିଥିଲେ—ଏହା ହେଉଛି man-made famine. ମଣିଷକୃତ ଦୁର୍ଭିକ୍ଷ ପ୍ରାକୃତିକ ଦୁର୍ଭିକ୍ଷଠାରୁ ଭୟଙ୍କର । ଓଡ଼ିଶାରେ ସେତେବେଳେ ପାରଳା ମହାରାଜାଙ୍କ ମିନିଷ୍ଟ୍ରି । ସମସ୍ତେ ଭାବିଲେ, ଏଭଳି ନିଷ୍ଠୁର ସତ୍ୟ ପ୍ରକାଶ କରିଥିବାରୁ ଲେଖକଙ୍କ ନାଁରେ କେଶ୍ ହୋଇଯିବ । ଏସବୁ କିଛି ହେଲା ନାହିଁ ସତ; ମାତ୍ର ଓଡ଼ିଶା ରାଜନୀତିର ସ୍ୱରୂପ ଅନେକ ପରିମାଣରେ ପଦାରେ ପଡ଼ିଗଲା ।

ନିଜସ୍ୱ ନାଟକ ସୃଷ୍ଟି ବ୍ୟତୀତ ସେ କେତୋଟି ବିଖ୍ୟାତ ଉପ-ନ୍ୟାସକୁ ସଫଳ ନାଟ୍ୟରୂପ ଦେଇଛନ୍ତି । ସେଗୁଡ଼ିକ ହେଲା—ପ୍ରତିଭା (ହରେକୃଷ୍ଣ ମହତାବ), ମଲାଜହ୍ନ (ଉପେନ୍ଦ୍ର କିଶୋର ଦାସ), ଅମଡ଼ା-ବାଟ (ବସନ୍ତ କୁମାରୀ ପଟ୍ଟନାୟକ) ଓ ଝିଅଟା (କାହ୍ନୁଚରଣ ମହାନ୍ତି) । ଅନେକ ଏ ମତ ଦେଇଛନ୍ତି ଯେ, ଗୋପାଳବାବୁଙ୍କ ଶ୍ରେଷ୍ଠତମ ନାଟ୍ୟକୃତି ହେଉଛି 'ପ୍ରତିଭା' । ବାସ୍ତବରେ 'ପ୍ରତିଭା'ର ନାଟ୍ୟରୂପ ନିଜସ୍ୱ ସୃଷ୍ଟିଠାରୁ ବଳି ପଡ଼ୁଛି । କିନ୍ତୁ ଗୋପାଳବାବୁ ନିଜ ନାଟ୍ୟକୃତି ଭିତରୁ କେଉଁଟି ସବୁଠାରୁ ଭଲ ( ତାଙ୍କ ଦୃଷ୍ଟିରେ ) ବୋଲି ପ୍ରଶ୍ନ କଲେ ମଜା ଉତ୍ତରଟିଏ ମିଳେ ।—"ସମସ୍ତେ ତ ମୋ ନିଜ ପିଲା । କାହାକୁ କହିବି ? ତେବେ 'ନଷ୍ଟ ଉର୍ବଶୀ'ଟି......" । ତା'ର କାରଣ ଦର୍ଶାଇବାକୁ ଯାଇ ସେ କହନ୍ତି, ବିରାଟ କାନ୍‌ଭାସ ଉପରେ ଏ ବହିଟି ଲେଖାଯାଇଛି । ଖୁବ୍ ଦ୍ରୁତ ଗତିମୁଖର ନାଟକ । ଏତେ କଥା କିପରି ଏଥିରେ ଭରି ପାରିଲି, ନିଜେ ସେ ଆଶ୍ଚର୍ଯ୍ୟ ହୁଅନ୍ତି ।

## ଚଳଚ୍ଚିତ୍ର ସଂଳାପ :

ମନେ ଅଛି, ସ୍କୁଲ କଲେଜରେ ପଢୁଥିଲାବେଳେ ଓଡ଼ିଆ ଚଳଚ୍ଚିତ୍ର ନୂଆ ନୂଆ ଉଂଜାପାଇ ଉଜ୍ଜଉଥାଏ । ସେତେବେଳେ ସେସବୁ ଚଳଚ୍ଚିତ୍ର ସହିତ ଯଦି ଗୋପାଳବାବୁଙ୍କ ନାଁ ଯୋଡ଼ା ହୋଇଥିବାର ଜାଣିବାକୁ ମିଳେ—ଆମେ ବ୍ୟାକୁଳ ହୋଇ ପଡ଼ୁଥିଲୁ ସେ ଚିତ୍ରଟି ଦେଖିବାକୁ । ସଂଳାପରେ ସମ୍ମୋହନୀ ଶକ୍ତି ଭରି ସେ ଏମିତି ମଜା ମଜା କଥା କହୁଥାନ୍ତି ଯେ; ସିନେମାହଲ୍‌ରୁ ଫେରିଲା ପରେ ତାହାହିଁ କେତେ ଦିନର ନିତିଦିନିଆ ଆଳାପ୍ ବସ୍ତୁ ହୋଇପଡ଼େ । ଆଜିକାଲିର ଓଡ଼ିଆ ଚଳଚ୍ଚିତ୍ରରେ ସେଭଳି ସଂଳାପ ଦୁର୍ଲଭ । କାରଣ ଆଜିକାଲି ସମସ୍ତେ ଚିତ୍ରନାଟ୍ୟ-ସଂଳାପ ଲେଖକ । ସମସ୍ତେ ସବୁକିଛି କରି ପକାଉଛନ୍ତି । ନିର୍ଦ୍ଦେଶକଠାରୁ ଅଭିନେତା ପର୍ଯ୍ୟନ୍ତ—କାହାଣୀଠାରୁ ସଂଳାପ ପର୍ଯ୍ୟନ୍ତ । ସେଇଥିପାଇଁ ତ ସିନେମା ଜଗତକୁ କ୍ରମଶଃ ବିଫଳତା ପରିବିସ୍ତାର କରି ମାଡ଼ି ଆସିଲାଣି । ଗୋପାଳବାବୁ ଯଦିଓ ଏଇ ମାଧ୍ୟମରେ ଆଦୌ ପରିତୃପ୍ତି ପାଇଁ ନକହନ୍ତି—ତଥାପି ତାଙ୍କମତରେ ସିନେମା ମାଧ୍ୟମ ଜଣେ ନାଟ୍ୟକାର ପାଇଁ ନିକୃଷ୍ଟ ମାଧ୍ୟମ । ସବୁଠାରୁ ଭଲ 'ମାଧ୍ୟମ ହେଲା ମଞ୍ଚ; ତା ପଛକୁ ବେତାର ।

ମାତ୍ର ଏହା ସତ୍ତ୍ୱେ ସେ ଚଳଚ୍ଚିତ୍ରରେ ଲେଖିଥିଲେ; ସମ୍ମାନିତ ହୋଇଥିଲେ । ୧୯୭୯ ମସିହାରେ 'ଶ୍ରୀଜଗନ୍ନାଥ' ଚିତ୍ର ତ ତାଙ୍କୁ ଅନେକ ଗୌରବର ଅଧିକାରୀ କରିଛି । ଏହାପରେ ପରେ ସେ 'ଅମଡ଼ାବାଟ' 'ଅଭିନେତ୍ରୀ', 'ଅଦ୍ଧନମେଘ', 'ମାଟିର ମଣିଷ', 'ଧରିତ୍ରୀ', 'କିଏ କାହାର', 'ବନ୍ଧୁ ମହାନ୍ତି', 'ଗ୍ରାମାପୂଜ', ଓ 'ମାଂସର ବଳାପ' ଚଳଚ୍ଚିତ୍ରର ସଂଳାପ ଶିଳ୍ପୀ । ସେ ଅନେକଥର ଶ୍ରେଷ୍ଠ ସଂଳାପ ରଚନାକାରୀ ହିସାବରେ ମଧ୍ୟ ସମ୍ମାନିତ । ଅନ୍ୟ କଥାରେ ବରଂ କୁହାଯାଇପାରେ— ଓଡ଼ିଆ ଚଳଚ୍ଚିତ୍ରର ସଂଳାପ ତ ଗୋପାଳ ଛୋଟରାୟଙ୍କର । ସେ ସବୁରି ମନକୁ ଛୁଇଁ ପାରିଲାଭଳି କଥା କହନ୍ତି—ସଂଳାପ ଲେଖନ୍ତି । ତାଙ୍କ ମତରେ, ନାଟକର ସଫଳତା ପାଇଁ ନାଟ୍ୟକାର ଷାଠିଏ ଭାଗ ଦାୟୀ । ବାକି ଚାଳିଶ ଭାଗ ଅଭିନେତା-ଅଭିନେତ୍ରୀ ଓ ଅନ୍ୟମାନେ ଦାୟୀ । ପାରିବାରିକ

ନାଟ୍ୟକୃତି (family play) ରେ ପଚ୍ଚେତ ନ କଲେ ଓଡ଼ିଶାରେ କୌଣସି କଳା ସଙ୍ଗଜନାଦୃତ ହୋଇ ପାରିବ ନାହିଁ । ଯେତେ ପରୀକ୍ଷା-ନିରୀକ୍ଷା କର, ଯେତେ ନୂଆ କଥା କହ—ତାହାକୁ ଜନସାଧାରଣଙ୍କ ପାଖରେ ପହଂଚାଇବା ପାଇଁ ଏହାହିଁ ସର୍ବୋତ୍କୃଷ୍ଟ ମାଧ୍ୟମ ।

## ବେତାରରେ ସିତାର ଝଙ୍କାର :

କଟେଯାଣ ମାଥୁର ! ତୁମକୁ ଶତ ଧନ୍ୟବାଦ— ତୁମେହିଁ ଏଭଳି ଦିଲ୍ଲୀକୁ ଆଖିବୁଜି ଓଡ଼ିଶାର ବେତାର କେନ୍ଦ୍ରପାଇଁ ଯଥାର୍ଥ ମନେକରି ବାଛିଥିଲ । ସେହିହିଁନୁ ଓଡ଼ିଶାର ଚଳଣି, କଳା-ସଂସ୍କୃତିକୁ ଅଧିକ ସଂସ୍କୃତିବନ୍ତ କରି ସୁନ୍ଦର ନାଟକୀୟ ଢଙ୍ଗରେ କେହି ଯଦି ଲକ୍ଷ ଲକ୍ଷ ଶ୍ରୋତାଙ୍କ କାନ ପାଖରେ ପହଂଚାଇବାର ଆପ୍ରାଣ ଉଦ୍ୟମ କରିଥାଏ ତ— ଗୋପାଳ ବାବୁଙ୍କ ନାମ ଆଗ ଆସିବ । ଗୋପାଳବାବୁ କଟକ ବେତାର କେନ୍ଦ୍ରରେ ଯୋଗ ଦେଲାବେଳକୁ କୃଷ୍ଣମୂର୍ତ୍ତି କେନ୍ଦ୍ର ନିର୍ଦ୍ଦେଶକ । ଅଦ୍ଭୁତ ରୁଚି ସେ ଲୋକଟିର । ନୂଆ ନୂଆ ଚିନ୍ତା—ନୂଆ କାର୍ଯ୍ୟକ୍ରମ; ପୁଣି ପ୍ରତ୍ୟେକ କଳାକାରର ଅବଦାନକୁ ଉପଯୁକ୍ତ ବିନିଯୋଗ କରିବାର ଆଗ୍ରହ ତାଙ୍କର ଥିଲା । ସେ ଗୋପାଳ ବାବୁଙ୍କୁ ଗୋଟିଏ ଧାରାବାହିକ ନାଟକ ଲେଖି ପ୍ରସ୍ତୁତ କରିବାପାଇଁ ଅନୁରୋଧ କଲେ । ତାଙ୍କ ଅନୁରୋଧ ରକ୍ଷାକରି ସେ ଲେଖିବାକୁ ଆରମ୍ଭକଲେ ଧାରାବାହିକ ନାଟକ 'ପୂରପୁରି ପାଟେବାଡ଼େ' । ୧୯୫୭ରୁ ଏହା କ୍ରମାଗତ ଭାବେ ସାଢ଼େ ତିନିବର୍ଷ ଚାଲିଲା । ଏହାପରେ କୃଷ୍ଣମୂର୍ତ୍ତି କାର୍ଯ୍ୟାନ୍ତରେ ଅନ୍ୟତ୍ର ଗଲେ । ଆସିଲେ ଆଉ ଜଣେ କେନ୍ଦ୍ରନିର୍ଦ୍ଦେଶକ । ସେ କହିଲେ, ବେତାରରେ ଯେଉଁ ନାଟକ ପ୍ରସାରିତ ହେବ, ତାହା ଛମାସ ଆଗରୁ ନାଟକ ବିଭାଗରେ ଦାଖଲ ହେବା ଉଚିତ । ଅବଶ୍ୟ ତାହାହିଁ ବେତାର କେନ୍ଦ୍ରର ନିୟମ ଥିଲା ।

କିନ୍ତୁ 'ପୂରପୁରି ପାଟେବାଡ଼େ'ରେ ନିତିଦିନିଆ ଘଟଣାବଳୀ ସ୍ଥାନ ପାଉଥିଲା । ଛମାସ ଆଗରୁ ପାଣ୍ଡୁଲିପି ପ୍ରସ୍ତୁତ କରିଦେଲେ ନାଟ୍ୟକାରଙ୍କ ମୁଖ୍ୟ ଉଦ୍ଦେଶ୍ୟ ବିଫଳ ହେବ । ତେଣୁ ଏ ସିରିଜ ବନ୍ଦ

ରଚନା । ସେ କେନ୍ଦ୍ର ନିୟମକୁ ମାନି ଲେଖିଲେ ଆଉ ଏକ ନାଟକ— 'ବିଭ୍ରାଟ' । ୧୯୬୦ ମସିହାରୁ ଏହା ଧାରାବାହିକ ଚାଲିଲା । ପାରିବାରିକ ତଥା ସାମାଜିକ ସମସ୍ୟାକୁ ସମ୍ବଳ କରି ଏହା ଲେଖାଯାଉଥିଲା । ଏହା ଦେଢ଼ବର୍ଷ ଧରି ଚାଲିଲା । ଏହାର ସୁଫଳ ମଧ୍ୟ ମିଳିଲା ଅନେକ । କୁଂଜଲତା ନନ୍ଦ, ଶିବଶେଖର ସରକାରଙ୍କ ଭଳି କଳାକାର ଏହି ନାଟକରେ ଅଭିନୟ କରି ଅତ୍ୟଧିକ ଲୋକପ୍ରିୟ ହୋଇପାରିଲେ । ୧୯୬୩ରୁ ଆରମ୍ଭ ହେଲା ସୁପରିଚିତ ହାସ୍ୟରସାତ୍ମକ ନାଟକ 'ଡ଼ାକ୍ତର ବାବୁ' । ଏହା ମଝିରେ ମଝିରେ ଉପସ୍ଥାପିତ କରାଯାଉଥିଲା । ୧୯୭୨ ମସିହାରେ ଆରମ୍ଭ ହେଲା 'ଶ୍ରୀହରିଙ୍କ ସଂସାର' । ତିରିଶ ମାସ କାଳ ଏହା ପ୍ରସାରିତ ହେଲା;—ପୁଣି ମାସକୁ ଦୁଇଥର । ନେହାନନ୍ଦ ନନ୍ଦ ଓ ସଂଘମିତ୍ରା ସୁଧା ପଟ୍ଟନାୟକ ଭଳି କଳାକାରଙ୍କୁ ଅଧିକ ସୁନାମ ଆଣି-ଦେଲା ଏହି ନାଟକ ।

ଗୋପାଳବାବୁଙ୍କ ମତରେ ମଞ୍ଚକୁ ଛାଡ଼ିଦେଲେ ପରବର୍ତ୍ତୀ ଉତ୍କୃଷ୍ଟ ମାଧ୍ୟମ ହେଲା ବେତାର । ବେତାରର ନାଟକକୁ ଯଦି ପାରି-ବାରିକ ରୁଚି ଭିତରେ ରଖା ନ ଯାଏ ତେବେ ଲକ୍ଷ ଲକ୍ଷ ଶ୍ରୋତା ହତାଶ ହେବେ । ଏହି ମନ୍ତବ୍ୟର ବାସ୍ତବ ପ୍ରମାଣ ପାଇଁ ତାଙ୍କୁ ଗୋଟାଏ ପରୀକ୍ଷା ଦେବାକୁ ପଡ଼ିଥିଲା । ସେ ଘଟଣା ୧୯୭୨ ମସିହା ବେଳର । କୃଷ୍ଣମୂର୍ତ୍ତି ପୁଣି କଟକ କେନ୍ଦ୍ରକୁ ନିର୍ଦ୍ଦେଶକ ହୋଇ ଆସିଥାନ୍ତି । ଦିଲ୍ଲୀରୁ ଗୋଟିଏ ଚିଠି ଆସିଲା ଓଡ଼ିଶାରୁ ଗୋଟାଏ ଅପେରା ରେକର୍ଡ଼ିଂ କରି ପଠାଅ । କୃଷ୍ଣମୂର୍ତ୍ତି ସବୁ ଅଫିସରଙ୍କୁ ଅପେରା କଥା ପଚାରିଲେ । ଅଧିକାଂଶ କହିଲେ, ଓଡ଼ିଶାରେ ଅପେରା ନାହିଁ । ଗୋପାଳବାବୁ ସେଠି ଉପସ୍ଥିତ ଥାଇ ଉତ୍ତର ଦେଲେ, ଓଡ଼ିଶାରେ ଅସଂଖ୍ୟ ଅପେରା ଅଛି; କିନ୍ତୁ କଟକ କେନ୍ଦ୍ର କିଛି ରେକର୍ଡ଼ିଂ କରିନାହିଁ । ସୁରେନ୍ ମହାନ୍ତି ଗୋପାଳବାବୁଙ୍କ କଥାକୁ ସମର୍ଥନ କଲେ । କୃଷ୍ଣମୂର୍ତ୍ତି ଅପେରା ରେକର୍ଡ଼ିଂ କରି ସଫଳ ହୋଇପାରିବ କି ନା-ବୋଲି ଗୋପାଳବାବୁଙ୍କୁ ପ୍ରତିଶ୍ରୁତି ମାଗିଲେ । ସ୍ପଷ୍ଟବାଦୀ ଉତ୍ତର ଦେଲେ, ଛଅବର୍ଷର ପିଲା ହୋଇଥିଲି ବେଳେ ମୁଁ ଯେଉଁ ଗୀତ ଓ ସ୍ୱର ଶୁଣିଥିଲି ବୈଷ୍ଣବ ପାଣିଙ୍କର— ତାକୁ ଆଜଯାଏ ମନେ ରଖିଛି । ଲୋକେ କ'ଣ ତାହା ଗ୍ରହଣ କରିବେ

ନାହିଁ ? ନିଷ୍ପତ୍ତି ଗ୍ରହଣ କରିବେ । ଏହା ରୁଚିକର ନ ହେଲେ ମୁଁ ଲୁକସ ଛାଡ଼ିଦେବି ।

ଅପେରା ରେକର୍ଡିଂ କରିବାକୁ କୃଷ୍ଣମୂର୍ତ୍ତି ଅନୁମତି ଦେଲେ । ଗୋପାଳବାବୁ ଏହାଙ୍କୁ ଏକ ଆହ୍ୱାନ ମନେକରି ଯୋଗାଡ଼ରେ ଲାଗି ପଡ଼ିଲେ । ବୈଷ୍ଣବ ପାଣିଙ୍କ ସହକର୍ମୀ ଓ ଶିଷ୍ୟ ଗୋବିନ୍ଦ ସାହୁ ଓ ଯୋଗୀ ମହାନ୍ତିଙ୍କ ପାଖକୁ ସେ ଦୌଡ଼ିଲେ । ପ୍ରଥମେ 'ରଙ୍ଗସଭା'କୁ ସେ ବେତାର ଉପଯୋଗୀ କରିବାକୁ ଲାଗିଲେ । ପାଣିଙ୍କ ଲେଖାରେ କେବଳ ସଂଗୀତ ପରେ ସଂଗୀତ ସଂଯୋଜିତ ହୋଇ ରହିଥିଲା । ତା'ର ସଂଯୋଗୀ ସଂଳାପ ବା ଗୀତ ନଥିଲା । ଗୋପାଳବାବୁ ତାହା ଯୋଡ଼ିଲେ ଏବଂ ଯେଉଁଠି ଯେଉଁଠି ଅଶ୍ଳୀଳ ବା ଜାତିଆଣ କଥା ରହିଥିଲା, ତାହାକୁ କାଟିଲେ । ଏହାପରେ ପୁଣି ଏକ ସମସ୍ୟା ମୁଣ୍ଡ ଟେକିଲା । ଅପେରାରେ ଗୀତ ଗାଇବ କିଏ ? ସବୁ ପ୍ରତିଷ୍ଠିତ କଳାକାର ଓ ସ୍ୱରଶିଳ୍ପୀ ଯାହା ଗୀତ ଗାଇବାକୁ ମନା କରିଦେଲେ । ଶେଷରେ ବାଳକୃଷ୍ଣ ଦାଶ ଆଗେଇ ଆସିଲେ । ଯୋଗୀ ମହାନ୍ତି ଆଗରେ ବସି ସୁନ୍ଦର ମନେ ପକାଇଲେ, ଗୀତ ରେକର୍ଡିଂ ହେଲା । ଯେଉଁଦିନ 'ରଙ୍ଗସଭା' କଟକ କେନ୍ଦ୍ରରୁ ପ୍ରସାରିତ ହେଲା, ସେଦିନ ଗୋପାଳବାବୁ କଟକରେ ନ ଥାନ୍ତି । ପୁଅ ଦେବଦାସଙ୍କର ଷୋଳଦାନ କରିବାକୁ ଗାଁକୁ ଯାଇଥାନ୍ତି । ଗାଁରୁ ସେ ପ୍ରଥମେ ଏଭଳି ପ୍ରଶଂସା ଶୁଣିଲେ ଯେ, ତାଙ୍କ ମନ ଉତ୍ଫୁଲ୍ଲିତ ହୋଇ ଉଠିଲା । କଟକକୁ ଆସି ଶୁଣିଲେ ଅସୁମାରି ପ୍ରଶଂସା । ତା'ପରେ ଚାଲିଲା କ୍ରମାଗତ ଅପେରା ପରିବେଷଣ ।

ଗୋଟିଏ କଥା ଏଇ ପରିପ୍ରେକ୍ଷୀରେ କୁହାଯାଇ ପାରେ— କୃଷ୍ଣମୂର୍ତ୍ତି ସ୍ଥାନରେ ଅନ୍ୟ କେହି କେନ୍ଦ୍ର ନିର୍ଦ୍ଦେଶକ ଥିଲେ ଓଡ଼ିଆ ଅପେରା revive କରିବାକୁ ଆହୁରି କେତେ ବର୍ଷ ଲାଗିଥାନ୍ତା, ତାହା କହି ହୁଅନ୍ତା ନାହିଁ । ଓଡ଼ିଆ ନାଟ୍ୟ-ସାହିତ୍ୟକୁ ମଧୁର-ସଂଳାପ ଶୁଣାଇ ଯିଏ ମୁଗ୍ଧ କରିଥିଲା, ସେହି ପୁଣି ଓଡ଼ିଆ ଅପେରାକୁ ପୁନଃ-ନବାୟନକରି ଓଡ଼ିଶୀ ଜନମାନସକୁ ଚମକାଇ ଦେଲା । ନାଟ୍ୟକାର ଶ୍ରେଷ୍ଠବୟସ୍କ ନିଜସ୍ୱ ମନ୍ତବ୍ୟ ଶୁଣାଇ କହନ୍ତି— ରେଡ଼ିଓରେ ଯଦି ମୋର କିଛି ଅବଦାନ ଥାଏ, ଏବେ ଯଦି ମୋର କିଛି ଗର୍ବ କରିବାର ଥାଏ,

ତେବେ ତାହା ହେଉଛି 'ଅପେରା' । ଇତିହାସ ଯଦି ମନେ ମନେ ରଖିବ, ତେବେ ଏଇଥିପାଇଁ ମନେରଖୁ । ମୁଁ ଅଙ୍ଗାର ଭିତରୁ ନିଆଁକୁ କାଢ଼ିତି । ଏସବୁ ନିଆଁ ସେ ସମଗ୍ର ଜାତିର ।

**ସତ୍ରନାହିଁ ସଂଗ୍ରାମ :**

ସମୟ ଆସିଲା, ଯେତେବେଳେ ପୁରାତନ ଗୀତିନାଟ୍ୟର ପୁନର୍ବାସ୍ୱନ ଛାଡ଼ି ଗୋପାଳବାବୁ ନିଜେ ଅପେରା ଲେଖିଲେ । ସବୁଠାରୁ ମଜାର କଥା ହେଉଛି, ଏତେ ନାଟକ ଲେଖି ପ୍ରଶଂସା ଓ ପ୍ରତିଷ୍ଠା ପାଇଥିବା ଶ୍ରେଷ୍ଠବ୍ୟକ୍ତି ଶେଷରେ ଏଇ ଅପେରା ପାଇଁ ସାହିତ୍ୟ ଏକାଡେମୀ ତରଫରୁ ପୁରସ୍କୃତ ହେଲେ । ତାଙ୍କୁ ଯେଉଁମାନେ ଏକଥା କହନ୍ତି, "ତମେ ସବୁବେଳେ ତମ ସମସାମୟିକ ଲୋକଙ୍କୁ ନାଟ୍ୟକାରଙ୍କୁ ଅତିକ୍ରମ କରି ଯାଉଛ"—ସେମାନଙ୍କ କଥା ସତ । କାରଣ ପ୍ରକୃତରେ ଲେଖକ ପାଖରେ କିଛି ସଂପତ୍ତି ନଥିଲା, କିନ୍ତୁ ବାସ୍ତବରେ ସବୁ କିଛି ଥିଲା । ଥିଲା ଅସଂଖ୍ୟ ଜନତାର ହୃଦୟ ଜୟ କରିବାର ଅଦ୍ଭୁତ ଅଦୃଶ୍ୟ ଶକ୍ତି । ଗୋପାଳବାବୁ ହିଁ ସେହି ଶକ୍ତିର ଅଧିକାଂଶ-ସଶସ୍ତ୍ର ସିପାହୀ । ଏହି ଦୁର୍ଦ୍ଧାନ୍ତ ସିପାହୀଙ୍କର ସଂଗ୍ରାମ ସରିନାହିଁ । ସେ ଏବେ ବି ହାତ ହତିଆର ଧରି ପ୍ରସ୍ତୁତ ।

ହେ ଚିର ଜାଗ୍ରତ ସିପାହୀ !

ତୁମକୁ ନମସ୍କାର ।



# ଗାନ୍ଧିବାଦୀ ନନ୍ଦକିଶୋର

* ଅଧ୍ୟାପକ ବାଉରୀବନ୍ଧୁ କର

ଗାନ୍ଧିବାଦୀ ଆଦର୍ଶ ଓ ଚିନ୍ତାଧାରାର ପୂଜାରୀ ଭାବରେ ନନ୍ଦକିଶୋର ଦାସ ସୁପରିଚିତ । ତାଙ୍କର ଜୀବନ ସାଧନା ଚଳିତ ଶତକ ଓଡ଼ିଶାର ସାମାଜିକ, ରାଜନୀତିକ, ଗାନ୍ଧିବାଦୀ ଦର୍ଶନର ଇତିହାସ । ବିଂଶ ଶତକରେ ସେବା, ନୀତି ଓ ଆଦର୍ଶକୁ ଜୀବନର ବ୍ରତ ରୂପେ ଗ୍ରହଣ କରି ସେ ଉତ୍କଳର ନବ ନିର୍ମାଣ ନିମିତ୍ତ ନିଷ୍ଠାପର ଉଦ୍ୟମ କରିଛନ୍ତି । ଗ୍ରାମସ୍ତରରୁ କେନ୍ଦ୍ରସ୍ତର ପର୍ଯ୍ୟନ୍ତ ବିଭିନ୍ନ ପର୍ଯ୍ୟାୟରେ ସେ ଜନଗଣର ପ୍ରତିନିଧିତ୍ୱ କରିଛନ୍ତି । ଏହି ପ୍ରବୀଣ ଅନପେକ୍ଷ ଜନସେବକ ଏବେ ବି କର୍ମଠ । ପ୍ରବୀଣସର୍ବସ୍ୱ ବିଂଶ ଶତକରେ ସେ ଅନାବିଳ ହୃଦୟ, ଅହେତୁକ ଆନ୍ତରିକତାର ସହ ଜନସେବାରେ ଜୀବନର ଉତ୍ତର ପର୍ଯ୍ୟାୟରେ ମଧ୍ୟ ତତ୍ପର । ଏ ପ୍ରକାରେ ତାଙ୍କ ଜୀବନ ଇତି-ବୃତ୍ତିର ସ୍ମୃତି ସ୍ମରଣ ପ୍ରତ୍ୟେକ ଉତ୍କଳୀୟ ପକ୍ଷେ ଗର୍ବ ଓ ଗୌରବର ବିଷୟ ।

ନନ୍ଦ କିଶୋର ଦାସ ଆଧୁନିକ ଓଡ଼ିଶାର ଏକ ପରିଚିତ ନାମ । ଊନବିଂଶ ଶତକରେ ଏହି ନାମରେ ଅନ୍ୟଜଣେ ବ୍ୟକ୍ତି ନବ ଉତ୍କଳ ଗଠନର ସ୍ୱପ୍ନ ଦେଖିଥିଲେ । ସେ ଜଣକ ହେଉଛନ୍ତି ରାୟବାହାଦୁର ନନ୍ଦକିଶୋର ଦାସ । ତତ୍କାଳୀନ ଓଡ଼ିଶାରେ ଜାତି ସଂସ୍କାର, ଓ ବିବାହରେ ଯୌତୁକ ଉଚ୍ଛେଦ ଦିଗରେ ଏ ମହାଶୟ ବ୍ୟାପକ ଜନମତ ସୃଷ୍ଟି କରିଥିଲେ । ଏହି ରାୟ ବାହାଦୁର ନନ୍ଦକିଶୋର ଦାସ ବାଲେ-ଶ୍ୱରରେ ଜନ୍ମଗ୍ରହଣ କରିଥିଲେ ଓ ବ୍ରିଟିଶ ଶାସନ କାଳରେ ସେ ନାନା ସଭାସମିତି ଜରିଆରେ ଓଡ଼ିଆମାନଙ୍କ ସ୍ୱାର୍ଥ ସଂରକ୍ଷଣ କରିଥିଲେ ।

ଆଲୋଚ୍ୟ 'ଗାନ୍ଧବାଣୀ ନନ୍ଦକିଶୋର' ବାଲେଶ୍ୱର ଜିଲ୍ଲା ସୋରୋ ସନ୍ନିକଟ ଗୋହିରିଆ ସାହି ନାମକ କ୍ଷୁଦ୍ର ପଲ୍ଲୀରେ ୧୩୦୧ ସାଲ ଅର୍ଥାତ୍ ୧୮୯୪ ମସିହା ପୁଣ୍ୟ ନନ୍ଦୋତ୍ସବ ତିଥିରେ ଭୂମିଷ୍ଠ ହୋଇଥିଲେ । ଏହି ଗୋହିରିଆ ସାହିଟି ଓଡ଼ିଶାର ବରେଣ୍ୟ କବି ରାଧାନାଥରାୟଙ୍କ ଜନ୍ମପୀଠ କେଦାରପୁରର ଦକ୍ଷିଣକୁ ପ୍ରାୟ ଏକ କିଲୋମିଟର ଦୂରରେ ଅବସ୍ଥିତ । ସୋରୋ ନାନା ପୁରାତନ ସ୍ମୃତିର ସ୍ମାରକୀ ବହନ କରିଛି । ଏବେ ସୁଦ୍ଧା ସପ୍ତ ମାତୃକା, ଖଣ୍ଡିତ ପ୍ରତ୍ନତାତ୍ତ୍ୱିକ ଅବଶେଷ ଏସ୍ଥାନର ଇତିହାସ ପ୍ରସିଦ୍ଧିର ମୂକ ସାକ୍ଷୀ । ଏଠାରେ ପ୍ରାଚୀନକାଳରେ ଏକ ରାଜ ପ୍ରତିଷ୍ଠିତ ଦୁର୍ଗ ଥିବାର ଜନଶ୍ରୁତି ଅଛି । ପୁରାଣ ବର୍ଣ୍ଣିତ ରାଜା ସୁରଥ ଏହି ସ୍ଥାନରେ ରାଜତ୍ୱ କରିଥିବା କିମ୍ବଦନ୍ତୀ ରହିଛି । ତାଙ୍କର ନାମ ଅନୁସାରେ ପରବର୍ତ୍ତୀ କାଳରେ ଏସ୍ଥାନ 'ସୁର', 'ସୋର' ହୋଇଥିବା ଅନୁମାନ କରାଯାଇପାରେ । ସମଗ୍ର ସୋର ଦଣ୍ଡପାଟର ଆୟତନ ଷୋଳ ବର୍ଗକ୍ରୋଶ । ଏହି ସ୍ଥାନକୁ 'ଶୂରଭୂମି' ରୂପେ କବିବର ରାଧାନାଥ ନାମିତ କରିଛନ୍ତି । ଏହି ଶୂରଭୂମିର କେନ୍ଦ୍ରସ୍ଥଳରେ 'ପାଇକ ସାହି', 'ଘୋଡ଼ାସାହି', 'ଖଣ୍ଡାସାହି' ଲଖାହାଡ଼ା ପଡିଆ' ପ୍ରଭୃତି ଉତ୍କଳର ଲୁପ୍ତ ଗୌରବ ଓ ପୂର୍ବସ୍ମୃତିକୁ ସ୍ମରଣ କରାଇ ଦିଏ । ଏହି ଅଞ୍ଚଳରେ କେବଳ ରାଧାନାଥ ନୁହନ୍ତି, ପଣ୍ଡିତ ଆର୍ତ୍ତତ୍ରାଣ ନନ୍ଦ ଓ ଟିକ୍କୁମିଆଁ ଆଦି ମଧ୍ୟ ଜନ୍ମଲାଭ କରିଛନ୍ତି । ପଣ୍ଡିତ ଆର୍ତ୍ତତ୍ରାଣ ସଂସ୍କୃତ, ବେଦ ଓ ବେଦାନ୍ତରେ ଅପୂର୍ବ ପାରଦର୍ଶିତା ଲାଭ କରିଥିଲେ ଓ ଟିକ୍କୁମିଆଁ ପାର୍ଶୀ ଭାଷାରେ ଜଣେ ବିଚକ୍ଷଣ ବିଦ୍ୱାନ ଥିଲେ । ଫକୀର ମୋହନ ସେନାପତି ଏହି ପ୍ରାଚୀନ ପୀଠ ସୋରର ଭୂୟସୀ ପ୍ରଶଂସା କରି ଉତ୍କଳ ଭ୍ରମଣରେ ଲେଖିଛନ୍ତି :—

"ଆହେ ସୋର ଗ୍ରାମ କରେ ତୁମ୍ଭଙ୍କୁ ସମ୍ମାନ
ଆର୍ତ୍ତତ୍ରାଣ ସଦାଶିବ ନନ୍ଦ ଜନ୍ମସ୍ଥାନ
ଜନ୍ମିଛନ୍ତି ରାଧାନାଥ ଯୋଗ୍ୟପୁତ୍ର ମଣି
ଅଟେ କି ଏ ଗ୍ରାମ ଗୋଟା ମରକତ ଖଣି ।"

ଏହିପରି ପାରମ୍ପରିକ କୀର୍ତ୍ତିପୂର୍ଣ୍ଣ ସ୍ଥାନରେ ଜନ୍ମ ଗ୍ରହଣ କରି ନନ୍ଦକିଶୋର ଏହାର ମହିମା ବୃଦ୍ଧି କରିପାରିଛନ୍ତି ।

ସେ ନନ୍ଦଜନ୍ମୋତ୍ସବର କୋଳାହଳ ମଧ୍ୟରେ ଭୂମିଷ୍ଠ ହୋଇଥିବାରୁ ତାଙ୍କର ନାମ 'ନନ୍ଦକିଶୋର' ରଖାଯାଇଥିଲା । ଅଭାବ, ଅନାଟନ ଥିଲା ନନ୍ଦକିଶୋରଙ୍କ ପରିବାରର ନିତ୍ୟ ସହଚର । ଗୋଷ୍ଠୀର ସାହିରେ ତାଙ୍କର ପ୍ରତିବେଶୀମାନଙ୍କ ପ୍ରାଚୁର୍ଯ୍ୟ ଓ ଧନର ଆଟୋପ ମଧ୍ୟରେ ନନ୍ଦକିଶୋରଙ୍କ ଦୁଃଖ-ଦୈନ୍ୟ ବେଶ୍ ବାରି ହୋଇପଡ଼ୁଥିଲା । ତାଙ୍କର ମାଆ ଅତି ଦୁଃଖରେ, ବଡ଼ଝିଅ ଓ ଦୁଇ ପୁଅଙ୍କୁ ଧରି କାଳାତିପାତ କରୁଥିଲେ । ବିଶ୍ୱର ବହୁ ପ୍ରତିଭାଶାଳୀ ବ୍ୟକ୍ତିଙ୍କ ବାଲ୍ୟଜୀବନ ଏତାଦୃଶ ଦୁଃଖଦ । ସେମାନେ ପରିସ୍ଥିତି ପ୍ରତିକୂଳରେ ଗତି କରି ସୁଧା ଜୀବନରେ ନିଶ୍ଚିତ ପରି ମଣିଷ ହୁଅନ୍ତି । ନନ୍ଦକିଶୋର ଜୀବନର ଏସବୁ କରୁଣ-ବିୟୋଗାନ୍ତ ଅବସ୍ଥାକୁ ଆପଣାର କରି ବିଦ୍ୟାଶିକ୍ଷାରେ ମନୋନିବେଶ କଲେ । ପ୍ରାଇମେରୀ ଶିକ୍ଷା ଗ୍ରାମରେ ସମାପ୍ତ କରି ଗ୍ରାମଠାରୁ ଅଳ୍ପଦୂରରେ ଥିବା ମଧ୍ୟଇଂରାଜୀ ବିଦ୍ୟାଳୟରେ ୧୯୦୭ ମସିହାରେ ନାମ ଲେଖାଇଲେ । ସ୍କୁଲର ଶିକ୍ଷକମାନେ ତାଙ୍କର ଦାରିଦ୍ର୍ୟ ପ୍ରତି ସଚେତନ ଥିଲେ । ତାଙ୍କର ଭବିଷ୍ୟତ ଶିକ୍ଷା ସକାଶେ ଛାତ୍ରବୃତ୍ତି ଏକାନ୍ତ ଅପରିହାର୍ଯ୍ୟ ମନେକରି ତାଙ୍କୁ ବୃତ୍ତିଲାଭ ଆଶାରେ ଅଧିକ ଏକବର୍ଷ ମଧ୍ୟଇଂରାଜୀ ଶ୍ରେଣୀରେ ରଖିଦେଲେ । ସେ ୧୯୦୮ ମସିହାରେ ମଧ୍ୟଇଂରାଜୀ ବୃତ୍ତି ପରୀକ୍ଷା ଦେଲେ ମାତ୍ର ବୃତ୍ତି ଲାଭ କରିପାରିଲେ ନାହିଁ । ବୃତ୍ତି ନ ମିଳିବା ଓ ଆର୍ଥିକ ସମ୍ବଳ ନଥିବା କାରଣରୁ ତାଙ୍କର ବିଦ୍ୟାଶିକ୍ଷା ମଧ୍ୟଇଂରାଜୀ ଶ୍ରେଣୀ ପରେହିଁ ସ୍ଥଗିତ ରହିଲା । କିନ୍ତୁ ନନ୍ଦକିଶୋରଙ୍କ ବିଦ୍ୟାଶିକ୍ଷା ଅଭୀପ୍ସା ପ୍ରବଳ ଥିବାରୁ ଆର୍ଥିକ ଦୁର୍ଗତି ସେଥିପାଇଁ ଅନ୍ତରାୟ ହୋଇପାରିଲା ନାହିଁ । ତାଙ୍କର ବିଦ୍ୟାପ୍ରତି ଐକାନ୍ତିକ ଆଗ୍ରହ ଓ ଦୃଢ଼ ମନୋବଳ ଦେଖି ଭଗ୍ନୀପତି ୧୯୧୦ ମସିହାରେ ବାଲେଶ୍ୱର ଜିଲ୍ଲା ସ୍କୁଲରେ ଏଣ୍ଟ୍ରାନ୍ସ ଶ୍ରେଣୀରେ ତାଙ୍କର ନାମ ଲେଖାଇଦେଲେ । ନନ୍ଦକିଶୋର ଭାଗ୍ୟର ବିଡ଼ମ୍ବନାରେ ଅଭିଭୂତ ନହୋଇ ବିଦ୍ୟାଶିକ୍ଷାରେ ମନୋଯୋଗ ଦେଲେ । ଗଭୀର ଅଧ୍ୟବସାୟ, ଅପୂର୍ବ ମନୋବଳ ଓ ତୀକ୍ଷ୍ଣ ଧୀଶକ୍ତି ବଳରେ ସେ ମାଟ୍ରିକ୍ୟୁଲେସନ୍ ପରୀକ୍ଷାରେ ସେ ସମଗ୍ର ବିହାର ଓଡ଼ିଶାରେ ପଞ୍ଚମ ସ୍ଥାନ ଅଧିକାର କଲେ । ସେହି କୃତିତ୍ୱର ଫଳ ସ୍ୱରୂପ ସେ ମାସିକ କୋଡ଼ିଏ ଟଙ୍କା ବୃତ୍ତି ଲାଭ କଲେ । ଫଳରେ ସେ ୧୯୧୬ ମସିହାରେ ଆଇ.ଏ. ଓ ୧୯୧୮ ମସିହାରେ ଇଂରାଜୀ ଅନର୍ସ

ପଢ଼ ବି.ଏ ପାଶ୍ କଲେ । କଲେଜରେ ଅଧ୍ୟୟନ କାଳରେ ସେ ପଣ୍ଡିତ ଗୋପବନ୍ଧୁ, ନୀଳକଣ୍ଠ, ଗୋଦାବରୀଶ ପ୍ରମୁଖ ସତ୍ୟବାଦୀ ଗୋଷ୍ଠୀର ଚିନ୍ତାନାୟକଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇଥିଲେ । ଏହି ମନୀଷୀ ମାନଙ୍କ ଅନୁପ୍ରେରଣାରେ ଅଧ୍ୟୟନ ସହ ସେବା ଆଡ଼କୁ ମନ ବଳାଇଲେ । ୧୯୧୮ ମସିହାର ଶେଷ ପର୍ଯ୍ୟାୟରେ ଏମ୍.ଏ. ଓ ଆଇନ ପଢ଼ିବା ପାଇଁ କଲିକତା ଯାତ୍ରା କଲେ ।

ନନ୍ଦକିଶୋରଙ୍କ କଲିକତା ଅବସ୍ଥାନ କାଳରୁ ତାଙ୍କର ରାଜନୈତିକ ଜୀବନର ଆରମ୍ଭ ହୁଏ । କଲିକତାରେ ଏ ସମୟରେ ମହାତ୍ମାଗାନ୍ଧୀଙ୍କ ଅହିଂସା ଆନ୍ଦୋଳନର ବ୍ୟାପକ ସୂତ୍ରପାତ ହୋଇ ଥାଏ । ୧୯୨୧ ମସିହାର ଅସହଯୋଗ ଆନ୍ଦୋଳନର ପୂର୍ବରୁ କଲିକତା ଝଡ଼ ଝଞ୍ଜା ପୂର୍ଣ୍ଣ ରାଜନୈତିକ ପରିବେଶରେ ପୂର୍ଣ୍ଣ ଥିଲା । ବ୍ରିଟିଶ ରାଜଶକ୍ତି ବିରୁଦ୍ଧରେ ବଙ୍ଗଳାର ପ୍ରସିଦ୍ଧ ନେତୃବର୍ଗ ଅହରହ ଆନ୍ଦୋଳନରେ ବ୍ୟସ୍ତ ରହୁଥିଲେ । ଏମାନଙ୍କ ଆହ୍ୱାନରେ ସ୍କୁଲ କଲେଜର ଛାତ୍ରମାନେ ଆନ୍ଦୋଳନ ସହ ସଂପୃକ୍ତ ହୋଇଯାଇଥିଲେ । ନନ୍ଦକିଶୋର ଗୋପ-ବନ୍ଧୁଙ୍କ ଆଦର୍ଶବାଦର ଏକନିଷ୍ଠ ଉପାସକ ରୂପେ ଆନ୍ଦୋଳନରେ ନିଜକୁ ମିଶାଇ ଦେଲେ । ଏହିପରି ଭାବରେ ସେ କଲିକତାରେ ଅଧ୍ୟୟନ ଅପେକ୍ଷା ସ୍ୱାଧୀନତା ଆନ୍ଦୋଳନ ସହିତ ବିଶେଷଭାବେ ଅସହଯୋଗ ଆନ୍ଦୋଳନରେ ସକ୍ରିୟ ଅଂଶ ଗ୍ରହଣ କରି ଏମ୍.ଏ. ଓ ଆଇନ ପରୀକ୍ଷାରେ ବିଶେଷ ପାରଦର୍ଶିତା ଲାଭ କରିପାରିଲେ ନାହିଁ । ଏହି ସମୟରେ ତାଙ୍କ ବିବାହ ହେଲା ଓ ସେ ଓଡ଼ିଶାରେ ରହିଲେ ।

ନନ୍ଦକିଶୋରଙ୍କ ପାରିବାରିକ ଜୀବନ ସ୍ୱଚ୍ଛଳ ନଥିଲା । ଅସହ-ଯୋଗ ଆନ୍ଦୋଳନରେ ଯୋଗଦେବା ଯୋଗୁଁ ଆଉ ରାଜବୃତ୍ତିରେ ଯୋଗ ଦେଲେ ନାହିଁ । ତାଙ୍କର ଦାମ୍ପତ୍ୟ ଜୀବନ ଆର୍ଥିକ ଅନାଟନରେ ଗତି କରି ଶୋଚନୀୟ ହୋଇପଡ଼ିଲା । ତାଙ୍କର ସ୍ତ୍ରୀ ପରିବାରର ଏସବୁ କଷ୍ଟକୁ ଆନନ୍ଦର ସହ ଆପଣାର କରି ନେଇଥିଲେ ଓ ନନ୍ଦକିଶୋରଙ୍କୁ ସାଧାରଣ ସେବା କାର୍ଯ୍ୟରେ ସହଯୋଗ କରୁଥିଲେ । ଏପରି ଦୁଃଖ ହାହାକାର, ଅଭାବ, ଅଭିଯୋଗରେ ତାଙ୍କର ଜୀବନତନ୍ତ୍ରୀ ଆବଦ୍ଧ

ଥିଲେ ହେଁ ସେ ସେବା, ତ୍ୟାଗ, ପରୋପକାର, ଅକୃତ୍ରିମ ପ୍ରେମ ବନ୍ଧନରେ ଜୀବନର ଅଶ୍ରୁଳ ମୁହୂର୍ତ୍ତିରେ ଆଲୋକର ସନ୍ଧାନ କରୁଥିଲେ । ସୁତରାଂ ଦୁଃଖର ଘନ କାଳିମା ତାଙ୍କର ପ୍ରତିଭାକୁ ଆଚ୍ଛାଦନ କରି ପାରିଲା ନାହିଁ ।

ନନ୍ଦକିଶୋରଙ୍କ ସେବା ମନୋବୃତ୍ତିରେ ଉତ୍କଳମଣି ଗୋପବନ୍ଧୁ ଅଭିଭୂତ ହୋଇପଡ଼ିଥିଲେ । ତାଙ୍କର ନୈତିକ ଦୃଷ୍ଟିକୋଣ, ସ୍ୱଦେଶ-ପ୍ରୀତି ନିର୍ଭୀକ ଚିନ୍ତାଧାରାରେ ପ୍ରୀତହୋଇ ଗୋପବନ୍ଧୁ ତାଙ୍କୁ ସତ୍ୟବାଦୀ ବନବିଦ୍ୟାଳୟରେ ଶିକ୍ଷକ ରୂପେ ନିଯୁକ୍ତ ଦେଲେ । ୧୯୨୨ ଏପ୍ରିଲ ମାସରୁ ୧୯୨୬ ମସିହା ପର୍ଯ୍ୟନ୍ତ ସେ ସେଠାରେ କାର୍ଯ୍ୟ କରି ସମସ୍ତଙ୍କର ପ୍ରୀତିଭାଜନ ହୋଇଥିଲେ । ତାଙ୍କର ଇଂରାଜୀ ଶିକ୍ଷା ଦାନ ଥିଲା ସେଠାରେ ମୁଖ୍ୟ କାର୍ଯ୍ୟ । ଏହି ସତ୍ୟବାଦୀ ବନ ବିଦ୍ୟାଳୟରେ ରହଣି କାଳରେ ଗୋପବନ୍ଧୁ କାରାବରଣ କରି ହଜାରିବାଗ ଜେଲ୍‌ରେ ରହିଲେ । ଗୋପବନ୍ଧୁଙ୍କ ଅନୁପସ୍ଥିତିରେ 'ସମାଜ' ସମ୍ବାଦ ପତ୍ରର ସମ୍ପାଦନା କାର୍ଯ୍ୟରେ ସେ ନିୟମିତ ସହଯୋଗ କରୁଥିଲେ । ସମ୍ବାଦପତ୍ରରେ ସହାୟତା ସହିତ ଅନେକ ସମୟରେ ସେ ମଫସଲ ଅଞ୍ଚଳକୁ ଯାଇ କଂଗ୍ରେସର ବାର୍ତ୍ତା ପ୍ରଚାର କରୁଥିଲେ । ପଣ୍ଡିତ ଗୋପବନ୍ଧୁ ହଜାରିବାଗ ଜେଲରୁ ଦୀର୍ଘ ଦୁଇବର୍ଷ ରହି ମୁକ୍ତ ହେବାପରେ ସେ ବିଭିନ୍ନ ଅଞ୍ଚଳରେ କଂଗ୍ରେସର ବାର୍ତ୍ତା ପହଞ୍ଚାଇବା ପାଇଁ ସଭା ସମିତିମାନ ଆରମ୍ଭ କଲେ । ନନ୍ଦକିଶୋର ଏହି ସଭା ସମିତି-ସଂଗଠନରେ ଗୋପବନ୍ଧୁଙ୍କୁ ସାହାଯ୍ୟ କରୁଥିଲେ । ବାଲେଶ୍ୱର ଜିଲ୍ଲା କଂଗ୍ରେସର ସୋରୋ ଅଧିବେଶନରେ ନନ୍ଦକିଶୋର ନିଜର ସଂଗଠନ ଶକ୍ତି, ଜାତୀୟ ପ୍ରୀତିର ଯଥାର୍ଥ ପରିଚୟ ଦେଇଥିଲେ । ସତ୍ୟବାଦୀ ବନ-ବିଦ୍ୟାଳୟରୁ ଦୁଇମାସ ଛୁଟି ନେଇ ସେ ସୋରୋରେ ଏହି ଅଧିବେଶନର ସଫଳତା ପାଇଁ ଉଦ୍ୟମ କରିଥିଲେ । ସୋରୋରେ କଂଗ୍ରେସ ସମ୍ମିଳନୀ ଶେଷହେବା ପରେ ନନ୍ଦକିଶୋର ପୁଣି ସତ୍ୟବାଦୀ ପ୍ରତ୍ୟାବର୍ତ୍ତନ କଲେ । ସତ୍ୟବାଦୀ ବନ ବିଦ୍ୟାଳୟ ଏ ସମୟରେ ତାର ଉଚ୍ଚତର ମହତ୍ ଲକ୍ଷ୍ୟ ଓ ଆଦର୍ଶ ପରିହାର କରି ସରକାରଙ୍କ ସାହାଯ୍ୟ ଭିକ୍ଷୁ ହୋଇଥାଏ । ସତ୍ୟବାଦୀ ଜାତୀୟ ବିଦ୍ୟାଳୟ ପରିଚାଳନା ପାଇଁ

ବିହାର, ଓଡ଼ିଶା ସରକାରଙ୍କ ସାହାଯ୍ୟ ଓ ସହାନୁଭୂତି ଲୋଡ଼ିବା ଗୋପବନ୍ଧୁଙ୍କ ଇଚ୍ଛା ବିରୁଦ୍ଧ ଥିଲା । ଏ ପ୍ରକାର ଅବସ୍ଥାରେ ବ୍ୟଥିତ ହୋଇ ଗୋପବନ୍ଧୁ ତାଙ୍କର 'ସତ୍ୟବାଦୀ ପ୍ରେସ' ଓ 'ସମାଜ' ସମ୍ପାଦ-ପତ୍ର କାର୍ଯ୍ୟାଳୟକୁ ପୁରୀକୁ ସ୍ଥାନାନ୍ତରିତ କଲେ । ଗୋପବନ୍ଧୁଙ୍କର ଜାତୀୟ ବିଦ୍ୟାଳୟଠାରୁ ସଂପର୍କ ଛିନ୍ନ ହେବା ଲକ୍ଷ୍ୟକରି ନନ୍ଦକିଶୋର ମଧ୍ୟ ସେଠାରୁ ଶିକ୍ଷକ ପଦରୁ ବିଦାୟ ନେଲେ । ଶିକ୍ଷକତାରୁ ବିଦାୟ ନେବାପରେ ପୂର୍ଣ୍ଣ ପ୍ରାଣରେ ସେ ଜାତୀୟ କାର୍ଯ୍ୟ,ରାଜନୀତି ଓ କଂଗ୍ରେସୀ କାର୍ଯ୍ୟକ୍ରମରେ ଯୋଗଦେଲେ ।

ନନ୍ଦକିଶୋର କଂଗ୍ରେସର ବିଭିନ୍ନ ଅଧିବେଶନମାନଙ୍କରେ ନିୟମିତ ଯୋଗ ଦେଉଥିଲେ । ସେ ବାଲେଶ୍ୱର ଜିଲ୍ଲା କଂଗ୍ରେସ ସମ୍ମିଳନୀର ଭଦ୍ରକ ଅଧିବେଶନରେ ସଭାପତି ଭାବରେ ନିର୍ବାଚିତ ହୋଇଥିଲେ ଓ କଂଗ୍ରେସର ଅଧିବେଶନ ଦାୟିତ୍ୱ ସୁନ୍ଦରରୂପେ ସମ୍ପନ୍ନ କରିଥିଲେ । ତାଙ୍କର କାର୍ଯ୍ୟଦକ୍ଷତା ଓ ସେବାନିଷ୍ଠା ସକାଶେ ତାଙ୍କୁ ବିହାର ଓଡ଼ିଶା କାଉନ୍‌ସିଲ ସକାଶେ କଂଗ୍ରେସ ପ୍ରାର୍ଥୀ ରୂପେ ଉତ୍ତର ବାଲେଶ୍ୱର ନିର୍ବାଚନ ମଣ୍ଡଳୀ ପାଇଁ ମନୋନୀତ କରାଯାଇଥିଲା । ଏହି ନାମରେ ଦୁଇଗୋଟି ନିର୍ବାଚନମଣ୍ଡଳୀ ଥିଲା । ଦକ୍ଷିଣ ବାଲେଶ୍ୱର ସମୟରେ ବାଲେଶ୍ୱରରେ ଉତ୍ତର ବାଲେଶ୍ୱର, ଦକ୍ଷିଣ ବାଲେଶ୍ୱର ପ୍ରାର୍ଥୀ ଭାବରେ ବରେଣ୍ୟ ଜନନେତା ଠାକୁର ହରେକୃଷ୍ଣ ମହତାବ ମନୋନୀତ ହୋଇଥିଲେ । ଉଭୟେ ମଧ୍ୟ ନିର୍ବାଚନରେ ଜୟଯୁକ୍ତ ହେଲେ । ସେ ବାଲେଶ୍ୱର ମ୍ୟୁନିସପାଲିଟି ଓ ଜିଲ୍ଲାବୋର୍ଡର ସଭ୍ୟ ଭାବରେ ମଧ୍ୟ ନିର୍ବାଚିତ ହୋଇଥିଲେ । ପାଖ ତିନବର୍ଷ ବିହାର-ଓଡ଼ିଶା କାଉନ୍‌ସିଲର ସଦସ୍ୟ ଭାବରେ କାର୍ଯ୍ୟ କରିବା ପରେ କଂଗ୍ରେସର ନିର୍ଦ୍ଦେଶ କ୍ରମେ ଓ ମହାତ୍ମା ଗାନ୍ଧୀଙ୍କ ଆହ୍ୱାନରେ ଲବଣ ସତ୍ୟାଗ୍ରହ ଆନ୍ଦୋଳନରେ ଯୋଗ ଦେଇ ଅଠର ମାସ ସଶ୍ରମ କାରାଦଣ୍ଡ ଭୋଗ କରିଥିଲେ । ଜେଲ ରହଣି କାଳରେ କଠୋର ପରିଶ୍ରମ ବ୍ୟତୀତ ସାମାନ୍ୟ ଅବସର ପାଇଲେ ନିୟମିତ ଗୀତା ପାଠକରୁଥିଲେ । ଜେଲ ଜୀବନର ଦୁଃଖକୁ ସେ ବନ୍ଧୁମାନଙ୍କ ଗହଣରେ ହର୍ଷ-ପୁଲକ ମଧ୍ୟରେ ଅତିବାହିତ କରିଥିଲେ । ଲବଣ ସତ୍ୟାଗ୍ରହର ବନ୍ଦୀମାନେ ହଠାତ୍

ଗାନ୍ଧୀ-ଇରଉଇନ ସନ୍ଧି ଫଳରେ ମୁକ୍ତି ପାଇବାରୁ ସେ ମଧ୍ୟ ମୁକ୍ତ ହୋଇ ଗୃହକୁ ଫେରିଲେ । କିନ୍ତୁ ଦୁଃଖ-କଷ୍ଟ ଥିଲା ତାଙ୍କର ଚିର ସହଚର । ଗୃହକୁ ଫେରିବାର ଏକ ସପ୍ତାହ ପରେ ଆକସ୍ମିକ ଭାବରେ ତାଙ୍କର ଦୁଇଟି ସନ୍ତାନ ଓ ପତ୍ନୀଙ୍କର ବିୟୋଗ ଘଟିଲା । ବାଲ୍ୟ-କାଳରେ ପିତୃ ବିୟୋଗ, ଯୌବନରେ ପତ୍ନୀ ଓ ପୁତ୍ର ବିୟୋଗ ଏପରି ଦାରୁଣ ଦୁଃଖ ତାଙ୍କୁ ସମାଜ ସେବାରୁ ବିଚ୍ୟୁତ କରିନଥିଲା, ବରଂ ସେସବୁ ଦୁଃଖ ଓ ଶୋକ ତାଙ୍କୁ ଜାତି-ସେବା ପାଇଁ ଅଧିକରୁ ଅଧିକ ଆଗ୍ରହାନ୍ୱିତ କରିଥିଲା ।

ସେ ୧୯୩୨ ମସିହାରେ ବାଲେଶ୍ୱର ଜିଲ୍ଲା କଂଗ୍ରେସ କମିଟିର ସଭାପତି ଥାଇ 'ସତ୍ୟାଗ୍ରହ' ଓ 'ହରିଜନ ଆନ୍ଦୋଳନ'ରେ ମୁଖ୍ୟ ଅଂଶ ଗ୍ରହଣ କଲେ । ହରିଜନମାନଙ୍କ ସହ ପଂକ୍ତି ଭୋଜନ, ସେମାନଙ୍କ ସହ ଆଲାପଆଲୋଚନାରେ ନେତୃତ୍ୱ ନେଇଥିଲେ । ଏଥିପାଇଁ ପୁଣି ସେହି ବର୍ଷ ତାଙ୍କୁ ଏକୋଇଶି ମାସ କାରାବରଣ କରିବାକୁ ପଡିଥିଲା । ସେ ୧୯୩୩ ମସିହାରେ କାରାମୁକ୍ତ ହୋଇ ପୁନରାୟ ଗାନ୍ଧିଜୀଙ୍କ ହରିଜନ ଆନ୍ଦୋଳନକୁ ସକ୍ରିୟ କଲେ । ସେ 'ଉତ୍କଳ ହରିଜନ ସେବକ ସଂଘ' ନାମରେ ଏକ ଅନୁଷ୍ଠାନ ଗଠନ କରି ଏହି ସଂଘର ଏକାଧିକବାର ସଂପାଦକ ଓ ସଭାପତି ଦାୟିତ୍ୱ ବହନ କରିଥିଲେ । ସମାଜରୁ ବର୍ଣ୍ଣ-ବୈଷମ୍ୟ ଦୂର କରି ମାନବିକତାର ପ୍ରସାର ପାଇଁ ସେ ଜାତିପ୍ରଥାର କୁବ୍ୟବସ୍ଥା ବିରୁଦ୍ଧରେ ସତତ ସଂଗ୍ରାମରତ ଥିଲେ । ଏଥିନିମିତ୍ତ ସାଧାରଣ ଜୀବନରେ ତାଙ୍କର ଜ୍ଞାତି କୁଟୁମ୍ବ ଓ ବନ୍ଧୁଗଣ ତଥାକଥିତ ରକ୍ଷଣଶୀଳତା ଯୋଗୁଁ ଏସବୁ କାର୍ଯ୍ୟକୁ ପସନ୍ଦ କରୁନଥିଲେ । ନନ୍ଦ-କିଶୋର ଏଥିପ୍ରତି ଭ୍ରୂକ୍ଷେପ ନ କରି ବୃହତ୍ତର ମାନବ ଜାତିର କଲ୍ୟାଣ ସାଧନରେ ତତ୍ପର ରହିଲେ । ଏହି ସମୟରେ ତାଙ୍କର ଅନ୍ୟତମ ସହାର୍ଥୀ ଲକ୍ଷ୍ମୀନାରାୟଣ ସାହୁ ମଧ୍ୟ ନିଜକୁ 'ପାଣ' ବୋଲି କହି ହରିଜନ-ମାନଙ୍କ ସହିତ ବାସ କରୁଥିଲେ ।

ନନ୍ଦକିଶୋର ହରିଜନ ଆନ୍ଦୋଳନର ନେତୃତ୍ୱ ନେବା ସମୟକୁ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହୋଇନଥାଏ । ଓଡ଼ିଶାର ସୀମା, ଭୌଗୋଳିକ ଅବସ୍ଥିତି ଏକପ୍ରକାର ବିପର୍ଯ୍ୟସ୍ତ । ଓଡ଼ିଶାର କେତେକ ସ୍ୱଦେଶବତ୍ସଳ

ରାଜାଙ୍କ ଉଦ୍ୟମ ଏବଂ ଶ୍ରୀଯୁକ୍ତ ବିଶ୍ୱନାଥ ଦାଶ, ଡକ୍ଟର ହରେକୃଷ୍ଣ ମହତାବ ଓ ପଣ୍ଡିତ ଗୋଦାବରୀଶ, ପ୍ରମୁଖଙ୍କ ପ୍ରଚେଷ୍ଟାରେ ଓଡ଼ିଶା ୧୯୩୬ ମସିହାରେ ଏକ ସ୍ୱତନ୍ତ୍ର ପ୍ରଦେଶ ରୂପେ ସ୍ୱୀକୃତ ହେଲା । ଏତେବେଳକୁ ଗୋପବନ୍ଧୁ ଇହଲୋକରୁ ବିଦାୟ ନେଇ ସାରିଥାନ୍ତି ଓ କଂଗ୍ରେସ ମଧ୍ୟରେ ନାନା ଗୋଷ୍ଠୀ ବିବାଦ ଲାଗିଥାଏ । କଂଗ୍ରେସ ଅଧି-ବେଶନର ସ୍ଥାନ ନିରୂପଣ ନେଇ ଓଡ଼ିଶା କଂଗ୍ରେସ ଓ୍ୱାର୍କିଂ କମିଟି ଅଧୀନରେ ଏକ କମିଟି ଗଠିତ ହେଲା । ଏହି କମିଟିରେ ଗୋପବନ୍ଧୁ ଚୌଧୁରୀ, ବ୍ରହ୍ମପୁରର 'ଆଶା' ସଂପାଦକ ଶଶିଭୂଷଣ ରଥ, ନୀଳକଣ୍ଠ ଦାସ, ଆଚାର୍ଯ୍ୟ ହରିହର ଓ ନନ୍ଦକିଶୋର ଦାସ ସଭ୍ୟ ରହିଲେ । ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ପରେ ଯେଉଁ ସାଧାରଣ ନିର୍ବାଚନ ହେଲା, ସେଥିରେ ନନ୍ଦକିଶୋର ନିର୍ଦ୍ଦଳରେ ନିର୍ବାଚିତ ହେଲେ । କଂଗ୍ରେସ ନିଷ୍ଠାପର ଭାବରେ ବ୍ରିଟିଶ ଶକ୍ତି ଓ କାର୍ଯ୍ୟାବଳୀକୁ ପ୍ରତିରୋଧ କରିବା ପାଇଁ ଶାସନକ୍ଷମତା ଗ୍ରହଣ କଲା ନାହିଁ । ନନ୍ଦକିଶୋର ଏହି ସମୟରେ ବିଧାନସଭାର ଉପ-ବାଚସ୍ପତି ରୂପେ ନିର୍ବାଚିତ ହେଲେ । ଉପବାଚସ୍ପତି ଭାବରେ ସେ ସମସ୍ତ ବୈଧାନିକ ନିୟମ କାନୁନକୁ ସମ୍ମାନର ସହ ପାଳନ କରୁଥିଲେ ଓ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ଗଠିତ ହେବାର ଅଳ୍ପକାଳପରେ ସମଗ୍ର ଦେଶରେ ୧୯୪୨ ମସିହାର ଭାରତ ଛାଡ଼ ଆନ୍ଦୋଳନର ଆହ୍ୱାନ ଆସିଲା ।

ଇଂରେଜ ସରକାରଙ୍କ ସାମ୍ରାଜ୍ୟବାଦ, ଜାପାନୀମାନଙ୍କର ଭାରତ ସୀମାରେ ଘନ ଘନ ଆକ୍ରମଣ, ଓ ମହମ୍ମଦ ଆଲି ଜିନ୍ନାଙ୍କ ସ୍ୱତନ୍ତ୍ର ପାକିସ୍ଥାନ ଗଠନ ମନୋଭାବ ଦେଶରେ ଏକ ଆତଙ୍କିତ ପରିସ୍ଥିତି ସୃଷ୍ଟି କରିଥିଲା । ଏହାର ପ୍ରଭାବରେ କ୍ରମେ ଅରାଜକତା ଓ ଅସନ୍ତୋଷ ପରିଲକ୍ଷିତ ହେଲା । ଗାନ୍ଧିଜୀ ଏହି ସମୟରେ ହଠାତ୍ 'ଭାରତ ଛାଡ଼' ଆନ୍ଦୋଳନରେ ସ୍ୱପ୍ନ ଦେଖିଲେ । ସେ ୧୯୪୨ ମସିହା ଅଗଷ୍ଟ ୭ ତାରିଖରେ ନିଖିଳ ଭାରତ କଂଗ୍ରେସ କମିଟିର ବମ୍ବେ ଅଧି-ବେଶନରେ କମିଟି ଆଗରେ 'ଭାରତ ଛାଡ଼' ପ୍ରସ୍ତାବ ଆଗତ କଲେ । ସେ ସ୍ପଷ୍ଟ ଘୋଷଣା କରିଥିଲେ ଯେ, ବ୍ରିଟିଶ ଶକ୍ତି ବିରୁଦ୍ଧରେ ସଂଗ୍ରାମ ପାଇଁ ଏ ଆନ୍ଦୋଳନ କ୍ରୋଧରୁ ଉଦ୍ଭବ ନୁହେଁ, ବରଂ ଦେଶକୁ ସଙ୍କଟରୁ

ରକ୍ଷା କରି, ଭାରତରେ ଯଥା ଯଥ ଅଧିକାର ସାବ୍ୟସ୍ତ ପାଇଁ ଏହାର ସୃଷ୍ଟି । ଗାନ୍ଧିଜୀଙ୍କ ଏହି ପ୍ରସ୍ତାବ ବିପୁଳ ଉତ୍ସାହ ମଧ୍ୟରେ ଅଗଷ୍ଟ ୮ ତାରିଖରେ ଅନୁମୋଦିତ ହେଲା ଓ ଅଗଷ୍ଟ ନଅ ତାରିଖରେ ଏହି ବିପ୍ଳବ ବିଦ୍ୟୁତ୍ ଗତିରେ ସମଗ୍ର ଦେଶରେ ବ୍ୟାପିଗଲା । ନନ୍ଦକିଶୋର ଦାସ ଓଡ଼ିଶାରେ ଏହି ଆନ୍ଦୋଳନରେ ଅଂଶ ଗ୍ରହଣ କରି ପ୍ରାୟ ଦୁଇବର୍ଷ କାଳ ଇଂରାଜୀ ସରକାରଙ୍କ ଦ୍ୱାରା ଅଟକବନ୍ଦୀ ହୋଇ ରହିଥିଲେ । ଭାରତ ଛାଡ଼ ଆନ୍ଦୋଳନରେ ସଫଳତା ପରେ ସେ ଶାସନ ବିଧାୟକ ସଭାର ସଭ୍ୟରୂପେ ନିର୍ବାଚିତ ହୋଇଲେ ।

ସ୍ୱାଧୀନତା ଆନ୍ଦୋଳନ ସହିତ ପ୍ରତ୍ୟକ୍ଷ ସଂପୃକ୍ତ ରହି ନନ୍ଦକିଶୋର ବିଭିନ୍ନ ଭାବରେ ବ୍ରିଟିଶ ଶକ୍ତିଙ୍କ ଦ୍ୱାରା ନିର୍ଯ୍ୟାତିତ ହୋଇଥିଲେ । ସ୍ୱାଧୀନତା ପ୍ରାପ୍ତି ପରେ ୧୯୫୧ର ସାଧାରଣ ନିର୍ବାଚନରେ କଂଗ୍ରେସ ପ୍ରାର୍ଥୀ ଭାବରେ ନିର୍ବାଚିତ ହୋଇ ଓଡ଼ିଶା ବିଧାନ ସଭାର ଅଧ୍ୟକ୍ଷ ହେଲେ । ବିଧାନ ସଭାର ଅଧ୍ୟକ୍ଷ ଭାବରେ ସେ ଯେଉଁ ମହାନ ପରମ୍ପରା ଓ ନିରପେକ୍ଷତା ଅବଲମ୍ବନ କରିଥିଲେ, ତାହା ଏବେ ସୁଦ୍ଧା ଅନନୁକରଣୀୟ । ସ୍ୱାଧୀନତାପରେ ନନ୍ଦକିଶୋର ପଙ୍କିଳ ରାଜନୀତିରେ ଅଧିକ କାଳ ରହିବା ବାଞ୍ଛିତ ମନେ ନ କରି ପ୍ରତ୍ୟକ୍ଷ ରାଜନୀତିରୁ ଅବସର ନେଲେ । କାରଣ ସ୍ୱାଧୀତା ପରେ ରାଜନୀତି ଆଉ ଜୀବନର ଯଜ୍ଞ ନହୋଇ କେତେକଙ୍କର ଜୀବିକା ରୂପେ ପରିଗଣିତ ହେଲା । ଏପରି ଅବସ୍ଥାରେ ସେ ରାଜନୀତିରୁ ବିଦାୟ ନେଇ ଗାନ୍ଧିଜୀଙ୍କ ଆଦର୍ଶ, ବିନୋବାଙ୍କ ଭୂଦାନ ଆନ୍ଦୋଳନର ବାର୍ତ୍ତା ଗ୍ରାମାଞ୍ଚଳରେ ପ୍ରଚାର କଲେ । ପୁଣି ତାଙ୍କୁ ରାଜନୀତିକୁ ଅଣାଯାଇ ୧୯୬୦ରେ ରାଜ୍ୟସଭାକୁ ସଦସ୍ୟ ଭାବେ ପଠାଗଲା । ଏହିସମୟରେ ଏମ୍. ପି ଭାବରେ ରହି ସୁଦ୍ଧା ସେ ସାଧାରଣ ଜନତାର ସେବା, ସୂତାକଟା ଇତ୍ୟାଦିକୁ ଗୁରୁତ୍ୱ ଦେଉଥିଲେ । ପ୍ରତିପଲ୍ଲୀରେ ସର୍ବୋଦୟ ବାର୍ତ୍ତା ପହଞ୍ଚାଇବା ତାଙ୍କର ଏକନିଷ୍ଠ ଲକ୍ଷ୍ୟଥିଲା । ସେ ୧୯୬୬ରେ ପୂର୍ଣ୍ଣରୂପେ ରାଜନୀତିରୁ ଅବସର ଗ୍ରହଣ କରି ସୋରୋରେ ଅବସ୍ଥାନ କରୁଛନ୍ତି । ଗାନ୍ଧୀବାଦର ବାର୍ତ୍ତା ସେ ଜୀବନର ଉତ୍ତରକାଳରେ ମଧ୍ୟ ପ୍ରଚାର କରୁଛନ୍ତି । ଦୈନିକ ଅରଟରେ ସୂତାକାଟିବା ଅଭ୍ୟାସ ଏବେ ସୁଦ୍ଧା ୮୭ ବର୍ଷରେ ବି ତାଙ୍କର ଅବ୍ୟାହତ ରହିଛି ।

ନନ୍ଦକିଶୋର ଅଦ୍ୟାପି କର୍ମଠ—କର୍ମବ୍ରତୀ । ଏ କର୍ମ ଫଳାଭି-ସନ୍ଧିଯୁକ୍ତ ନୁହେଁ, କେବଳ ଶରୀରକୁ ସୁସ୍ଥ, ସୁନ୍ଦର ରଖି ମୁକ୍ତ ପ୍ରତୀକ୍ଷାରେ ଏ ଶରୀରର ଯାତ୍ରା । ଏଇଠି ମନେ ପଡ଼େ ଗୀତାର 'କର୍ମ ଯୋଗ'ର ଉକ୍ତି—

"ନିୟତଂ କୁରୁ କର୍ମତ୍ୱଂ କର୍ମ ଜ୍ୟାୟୋ ହ୍ୟକର୍ମଣଃ ।
ଶରୀର ଯାତ୍ରାପି ଚ ତେ ନ ପ୍ରସିଦ୍ଧ୍ୟେଦକର୍ମଣଃ ।"

ଅର୍ଥାତ୍, ଯେଉଁ କର୍ମ ଯେପରି କରିବା ଆବଶ୍ୟକ, ସେ ସବୁକୁ ସେହିପରି ସମ୍ପାଦନ କର । କାରଣ କର୍ମ ନ କରିବାଠାରୁ କର୍ମ କରିବା ଉତ୍ତମ ଓ କର୍ମ ନ କଲେ ଶରୀର ଯାତ୍ରା ଅସମ୍ଭବ । ଯେତେଦୂର ମନେହୁଏ, ନନ୍ଦକିଶୋର ଜୀବନର ପରିଣତ ବୟସରେ ଗୀତାର ମହାନ୍ ବାଣୀକୁ ପୁଞ୍ଜି କରି ସ୍ୱକର୍ମରେ ଅଟଳ । ଓଡ଼ିଶାରେ ଏଇ ବୟୋବୃଦ୍ଧ ଗାନ୍ଧୀବାଦୀ ନନ୍ଦକିଶୋର ଆଜି ସ୍ୱାବଲମ୍ବୀ ହେବା ପାଇଁ ଯୁବସମାଜକୁ 'ଖଟି ଖାଅ, କାଟି ପିନ୍ଧ' ଆହ୍ୱାନ ସତତ ଶୁଣାଉଛନ୍ତି । ଈଶ୍ୱର କରନ୍ତୁ, ତାଙ୍କ ଲକ୍ଷ୍ୟ ପୂରଣ ହେଉ !



# ଐତିହାସିକ ଡଃ ନବୀନକୁମାର ସାହୁ

*     ଡକ୍ଟର ଅସିତ କବି

ଅନେକ ବର୍ଷ ପୂର୍ବେ ଥରେ ଜଣେ ଇଂରେଜୀ ଲେଖକ କହିଥିଲେ—"It is easy to create history, but difficult to write history." ତାଙ୍କ ଉକ୍ତି ଯଥାର୍ଥ । ଯଥାର୍ଥ ଇତିହାସ ଲେଖିବା ସହଜ ନୁହେଁ । ଐତିହାସିକ ନିକଟରେ ଭାବପ୍ରବଣତାର ସ୍ଥାନ ନାହିଁ । ସତ୍ୟର ଆବିଷ୍କାର ଓ ତାର ପ୍ରତିଷ୍ଠା ତାର ଅଭୀପ୍ସା । ପ୍ରାଚୀନ ଉତ୍କଳ ଏକ ସମୃଦ୍ଧ ଓ ବିରାଟ ସାମ୍ରାଜ୍ୟ ଥିଲା । ସମୟ ସ୍ରୋତରେ ପ୍ରତିକୂଳତା ଆଶ୍ଲେଷିତ ହୋଇ ତାର ରାଜନୈତିକ ପରିସୀମା କ୍ରମେ ସଙ୍କୁଚିତ ହୋଇ ଚାଲିଲା; କିନ୍ତୁ ଏବେବି ନିର୍ଜୀବ ଶିଳାଖଣ୍ଡଗୁଡ଼ିକରେ ସେହି ଦୂର ଅତୀତର ଜୀବନ୍ତ ଇତିହାସର କେତେକ ସଙ୍କେତ ଉତ୍କୀର୍ଣ୍ଣ ହୋଇ ରହି ଆମକୁ ଆମ ପୂର୍ବପୁରୁଷର ଗୌରବ ସମ୍ପର୍କରେ ନାନାକଥା କହୁଥାଏ । ଦୀର୍ଘକାଳ ଧରି ମାଦଳାପାଞ୍ଜିକୁହିଁ ଏ ଦେଶର ଇତିହାସ ରୂପେ ଗ୍ରହଣ କରାଯାଉଥିଲା । ବୈଦେଶିକ ମନୀଷୀଗଣ ମଧ୍ୟ ଦୀର୍ଘକାଳ ଧରି ଏହାକୁ ପ୍ରାମାଣିକ ଗ୍ରନ୍ଥ ରୂପେ ଗ୍ରହଣ କରିନେଇଥିଲେ । ଉତ୍କଳର ଐତିହାସିକ ପ୍ୟାରୀମୋହନ ଗତ ଶତାବ୍ଦୀରେ ଓଡ଼ିଶାର ଯେଉଁ ଇତିହାସ ଲେଖିଥିଲେ ସେଥିରେ ମାଦଳାପାଞ୍ଜିର ବିବରଣୀକୁ ସମ୍ମାନିତ କରାଯାଇଛି । ଚଳିତ ଶତାବ୍ଦୀର ଗବେଷଣା କିନ୍ତୁ ଏଇ ସତ୍ୟର ସଙ୍କେତ ଦେଉଛି ଯେ, ମାଦଳାପାଞ୍ଜିର ସୃଷ୍ଟି ଇତିହାସ ସୁପ୍ରାଚୀନ ନୁହେଁ । ସେଥିରେ ଅତୀତର ବର୍ଣ୍ଣନା କଳ୍ପନା ଓ କିମ୍ବଦନ୍ତୀ ଆଶ୍ଲେଷିତ । ଚଳିତ ଶତାବ୍ଦୀର ବୈଜ୍ଞାନିକ ପଦ୍ଧତିରେ ସତ୍ୟର ଅନୁଶୀଳନ କରି ଏ ଦେଶର ଐତିହାସିକ ଘଟଣାକୁ ଯଥାଯଥ ଭାବରେ ଯେଉଁ କୃତି ସନ୍ତାନମାନେ ଉପସ୍ଥାପିତ କରିବାକୁ ପ୍ରଯତ୍ନ କରିଅଛନ୍ତି, ସେମାନଙ୍କ ମଧ୍ୟରେ

ବନ୍ଧୁପାକ୍ଷ କର, ସତ୍ୟନାରାୟଣ ରାଜଗୁରୁ, ପରମାନନ୍ଦ ଆଚାର୍ଯ୍ୟ, କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, କେଦାରନାଥ ମହାପାତ୍ର, ଡକ୍ଟର ହରେକୃଷ୍ଣ ମହତାବ ଓ ଡ଼: ନବୀନକୁମାର ସାହୁଙ୍କ ନାମ ଉଲ୍ଲେଖଯୋଗ୍ୟ ।

ଡ଼: ନବୀନକୁମାର ସାହୁଙ୍କ ଜନ୍ମ ୧୯୨୦ ମସିହାରେ— ଓଡ଼ିଶାର ସିଦ୍ଧ ସାଧକମାନଙ୍କର ପୁଣ୍ୟପୀଠ ସମ୍ବଲପୁର ଜିଲ୍ଲାର ବରପାଲିରେ । ଏହି ବରପାଲି କବି ଗଙ୍ଗାଧରଙ୍କ ଜନ୍ମଭୂମି ରୂପେ ଓଡ଼ିଆ ଜାତିର ତୀର୍ଥ କ୍ଷେତ୍ରରେ ପରିଣତ ହୋଇଛି । ବରପାଲି ଓ ତାର ନିକଟବର୍ତ୍ତୀ ଅଞ୍ଚଳଗୁଡ଼ିକରେ ବୌଦ୍ଧ ସିଦ୍ଧାଚାର୍ଯ୍ୟମାନେ ବାସ କରୁଥିଲେ । ବଜ୍ରଯାନ, କାଳଚକ୍ରଯାନ ଓ ସହଜଯାନର ପ୍ରବୃତ୍ତି ପ୍ରଥମେ ଏହି ଅଞ୍ଚଳରେ ହୋଇଥିଲା । ଓଡ଼ିଶାର ସମ୍ବଲପୁର ବା ପ୍ରାଚୀନ 'ସମ୍ଭଳ'ର ରାଜା ଇନ୍ଦ୍ରଭୂତିଙ୍କ ରଚିତ 'ଜ୍ଞାନସିଦ୍ଧି' ଗ୍ରନ୍ଥ ଏହାର ପ୍ରମାଣ । ଏହି ଜ୍ଞାନସିଦ୍ଧି ଗ୍ରନ୍ଥରେ ଉତ୍କଳର ଜଗନ୍ନାଥ ଚେତନା, ତାନ୍ତ୍ରିକ ବୌଦ୍ଧମତବାଦର ପାଣ୍ଡିତ୍ୟପୂର୍ଣ୍ଣ ବର୍ଣ୍ଣନା ରହିଛି ଓ ସେଠାରୁ ହିଁ ମନେହୁଏ ପ୍ରଥମେ ଜଗନ୍ନାଥଙ୍କ 'ଜିନ'ର ପରିକଳ୍ପନା ଏହାପରେହିଁ ସମଗ୍ର ଉତ୍କଳରେ ପ୍ରଚଳିତ ହୋଇଛି । ଏହିଭଳି ଏକ ବିରାଟ ପାରମ୍ପରିକ ସମ୍ବଲପୁରର ବରପାଲିରେ ଆଧୁନିକ ଉତ୍କଳର ଖ୍ୟାତନାମା ଐତିହାସିକ ଡ଼: ସାହୁଙ୍କର ଜନ୍ମ । ସତେଯେପରି ଏକ ବିରାଟ ଜାତିର ସମୃଦ୍ଧି ବନର ଅଜ୍ଞାତ ଇତିହାସକୁ ଲୋକଲୋଚନକୁ ଆଣିବା ଲକ୍ଷ୍ୟରେ ତାଙ୍କର ଆବିର୍ଭାବ । ୧୯୩୦ ରେ ସେ ମାଟ୍ରିକ ପାଶ କରିଥିଲେ । ୧୯୩୬ ମସିହାରେ ଇତିହାସ ଅନର୍ସ ସହ ବି.ଏ. ପାଶ କଲେ ଓ ୧୯୪୯ ମସିହାରେ ଆହ୍ଲାହାବାଦ ବିଶ୍ୱବିଦ୍ୟାଳୟରୁ ଏମ୍.ଏ. ପରୀକ୍ଷାରେ କୃତିତ୍ୱର ସହ ଉତ୍ତୀର୍ଣ୍ଣ ହେଲେ । ତାଙ୍କ ଗବେଷଣା ମନୋବୃତ୍ତିର ଆଭାସ ମିଳିଥିଲା ଏମ୍. ଏ. ପଢିବା ସମୟରୁ । ଏମ୍.ଏ. ପାଶ୍ କରିବା ପରଠାରୁ ସେ ବିଧିବଦ୍ଧ ଭାବରେ ଗବେଷଣା ଆରମ୍ଭ କରିଛନ୍ତି । ବିଶିଷ୍ଟ ଗବେଷକ ଓ ପଣ୍ଡିତ ଡକ୍ଟର ନଳିନାକ୍ଷ ଦତ୍ତଙ୍କ ନିର୍ଦ୍ଦେଶନାରେ ତାଙ୍କ ଗବେଷଣାତ୍ମକ ପ୍ରବନ୍ଧ "Buddhisim in Orissa" ପାଇଁ ୧୯୫୪ ମସିହାରେ ସେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ପି.ଏଚ୍.ଡ଼. ପାଇଲେ । ପୁଣି ୧୯୬୨ ମସିହାରେ ଡ଼.ଲିଟ୍ ଡିଗ୍ରୀ ପ୍ରାପ୍ତ ହୋଇଥିଲେ । ୧୯୭୦ ମସିହା ପର୍ଯ୍ୟନ୍ତ ଅଧ୍ୟାପକ

ରୂପେ ଓଡ଼ିଶାର ବିଭିନ୍ନ କଲେଜରେ ଅଧ୍ୟାପନା କରିବାପରେ ସେହି ୧୯୬୦ ମସିହାରେ ରାଜ୍ୟସରକାରଙ୍କ ଜିଲ୍ଲା ଗେଜେଟିୟରର ସମ୍ପାଦକ ରୂପେ ସେ ନିଯୁକ୍ତ ହୋଇଥିଲେ ।

୧୯୬୮ ମସିହାରେ ତାଙ୍କ ଜୀବନରେ ଉନ୍ମୋଚିତ ହୋଇଥିଲା ଅନ୍ୟ ଏକ ଅଧ୍ୟାୟ । ସମ୍ବଲପୁର ବିଶ୍ୱବିଦ୍ୟାଳୟର ରେଜିଷ୍ଟ୍ରାର ରୂପେ ଯୋଗଦାନ କରି ସେ ନିଜର ପ୍ରଶାସନିକ ଦକ୍ଷତାର ପରିଚୟ ଦେଇଥିଲେ । ୧୯୭୦ରେ ସେହି ବିଶ୍ୱବିଦ୍ୟାଳୟର ଇତିହାସ ବିଭାଗର ପ୍ରଫେସର ଓ ମୁଖ୍ୟ ଇତିହାସ ଅଧ୍ୟାପକ ଭାବରେ ନିଯୁକ୍ତି ପାଇଲେ । ୧୯୭୯ ମସିହାର ନଭେମ୍ବର ମାସରେ ସେହି ବିଶ୍ୱବିଦ୍ୟାଳୟର କୁଳପତି ରୂପେ କାର୍ଯ୍ୟଭାର ଗ୍ରହଣ କରିଛନ୍ତି । ସମ୍ପ୍ରତି ସେ ଓଡ଼ିଶା ତଥା ଭାରତରେ ବହୁ ବିଶିଷ୍ଟ ଅନୁଷ୍ଠାନ ସହ ସମ୍ପୃକ୍ତ । ବିଶ୍ୱବିଦ୍ୟାଳୟର ଅନୁଦାନ କମିଟି ଇତିହାସ ବିଭାଗର ସେ ସଦସ୍ୟ । ଭାରତର ଐତିହାସିକ ରେକର୍ଡ଼ କମିଟିରେ ମଧ୍ୟ ସେ ସଭ୍ୟ ଅଛନ୍ତି । ଓଡ଼ିଶାରୁ ପ୍ରକାଶିତ 'Orissa Historical Research Journal' ଓ 'Journal of Orissa History'ର ସେ ସଭ୍ୟ । ସମ୍ବଲପୁର ବିଶ୍ୱବିଦ୍ୟାଳୟ ଆନୁକୂଲ୍ୟରେ ପ୍ରକାଶିତ ହେଉଥିବା 'ସପ୍ତର୍ଷି' ପତ୍ରିକାର ସେ ମୁଖ୍ୟ ସମ୍ପାଦକ ।

ଉତ୍କଳର ସାରା ଓଡ଼ିଶାର ବିଭିନ୍ନ ଅନୁଷ୍ଠାନ ପ୍ରତିଷ୍ଠାରେ ତାଙ୍କର ସାଂଗଠନିକ ଦକ୍ଷତାର ପରିଚୟ ଦେଇଛନ୍ତି । ତାଙ୍କର ସୁଉଦ୍ୟମରେ ବରପାଲିରେ ଏକ କଲେଜ ପ୍ରତିଷ୍ଠା ସମ୍ଭବ ହୋଇଛି । ସମ୍ବଲପୁର ବିଶ୍ୱବିଦ୍ୟାଳୟର ମ୍ୟୁଜିୟମ୍ ତାଙ୍କରି ପ୍ରଚେଷ୍ଟାରେ ସ୍ଥାପିତ ହୋଇଛି । ସେ ଓଡ଼ିଶାର ପ୍ରାଚୀନ ପୋଥି, ମୁଦ୍ରା, ଶିଳାଲେଖା, ସଂଗ୍ରହ କରି ସେ ସବୁକୁ ସାଇତି ରଖିଛନ୍ତି । ଏପରି ଏକକ ଉଦ୍ୟମରେ ସଂଗ୍ରହାଳୟ ପ୍ରତିଷ୍ଠା ବାସ୍ତବରେ ବିରଳ । ଓଡ଼ିଶାର ପ୍ରତ୍ନତାତ୍ତ୍ୱିକ ଖନନରେ ତାଙ୍କର ଯଥେଷ୍ଟ ଭୂମିକା ରହିଛି । ସେ ପ୍ରାଚୀ, ଅଙ୍ଗ, ତେଲ ନଦୀର ଉପତ୍ୟକା ସହ ସଂପୃକ୍ତ । ବଲାଙ୍ଗିର ଓ କଳାହାଣ୍ଡିର 'ଅସୁରଗଡ଼'ର ଲୁପ୍ତ କୀର୍ତ୍ତି ତାଙ୍କର ଚେଷ୍ଟାରେ ଲୋକଲୋଚନକୁ ଆସିଛି । ସେ ଓଡ଼ିଶା ଓ ମଧୁସୂଦନ ଦାସଙ୍କ ସମ୍ପର୍କରେ ଯୋବର୍ ୧୮ଟି ଉଚ୍ଚକୋଟିର ପୁସ୍ତିକା ସମ୍ପାଦନା

କରିଛନ୍ତି । ଡକ୍ଟର ସାହୁ ଓଡ଼ିଶା ଓ ଭାରତର ଶ୍ରେଷ୍ଠତମ ବହୁ ଅନୁଷ୍ଠାନ ସହ ସଂପୃକ୍ତ । ବୃତ୍ତିଗତ ଜଞ୍ଜାଳ ସହ ଏସବୁରେ ନିଷ୍ଠାପର ସହଯୋଗ ପ୍ରକୃତରେ ତାଙ୍କର ବହୁମୁଖୀ ବ୍ୟକ୍ତିତ୍ୱର ପରିଚାୟକ । ତାଙ୍କର ଜୀବନ କର୍ମବହୁଳ । ଏହି କର୍ମବହୁଳ ଜୀବନ ଜାଗ୍ରତତାର ବିକାଶ ପାଇଁ ଗତିଶୀଳ । ତେଣୁ ପଣ୍ଡିତ ନୀଳକଣ୍ଠଙ୍କ ପରି ମନୀଷୀ ମଧ୍ୟ ଏହି ତରୁଣଙ୍କ ପ୍ରଶଂସା କରିଛନ୍ତି ଓ ଡକ୍ଟର ସାହୁଙ୍କ ଗବେଷଣାର ତଥ୍ୟକୁ ସେ ବାରମ୍ବାର ତାଙ୍କର ପ୍ରବନ୍ଧ ଗୁଡ଼ିକରେ ଉଦ୍ଧାର କରିଛନ୍ତି । ଡ଼କ୍ଟର ସାହୁଙ୍କ ଜୀବନରେ ଗବେଷଣା ସବୁଠାରୁ ଉଚ୍ଚ ଆସନ ପାଇଛି । ତାଙ୍କପାଇଁ ଗବେଷଣା ଅଳ୍ପ କାଳର ସାଧନା ନୁହେଁ—ଏହା ଏକ ମନୋବୃତ୍ତି ଓ ଜୀବନବ୍ୟାପୀ ତପସ୍ୟା । ଏହି ଦୃଷ୍ଟିଭଙ୍ଗୀ ଡ଼କ୍ଟର ସାହୁଙ୍କ ଜୀବନ ସାଧନାର ମୁଖ୍ୟପର୍ଯ୍ୟାୟ ।

ଡ଼କ୍ଟର ସାହୁଙ୍କ ଐତିହାସିକ ଗବେଷଣା ଓ ସୃଷ୍ଟି ଗୁଡ଼ିକୁ ନିମ୍ନ ପର୍ଯ୍ୟାୟରେ ବିଭକ୍ତ କରାଯାଇପାରେ ।

(କ) ଐତିହାସିକ ବିବରଣୀର ସମ୍ପାଦନା— ଓ ତାର ପୁନର୍ମୂଲ୍ୟାଙ୍କନ :

ସେ ଆଠଗୋଟି ଜିଲ୍ଲା ଗେଜେଟିୟରର ସଂପାଦନା କାର୍ଯ୍ୟ ସ୍ୱତନ୍ତ୍ର ରୂପେ ସଂପାଦନା କରିଛନ୍ତି । ସେ ଏଗୁଡ଼ିକରେ ବିଭିନ୍ନ ଅଞ୍ଚଳର ବିଭିନ୍ନ ପ୍ରସିଦ୍ଧ ବ୍ୟକ୍ତିବିଶେଷଙ୍କଠାରୁ ତଥ୍ୟସଂଗ୍ରହ କରିଛନ୍ତି । ସେସବୁକୁ ସୁସଂହତ ଭାବରେ ସଂପାଦନା କରି ନିଜର ମନ୍ତବ୍ୟ ଅନେକ ସ୍ଥାନରେ ଦେଇଛନ୍ତି । ଏଗୁଡ଼ିକରୁ ତାଙ୍କର ଓଡ଼ିଶାର ପୁରପଲ୍ଲୀ, ନଦ-ନଦୀ ପ୍ରଭୃତି ସଂପର୍କରେ ଯଥେଷ୍ଟ ଜ୍ଞାନର ପରିଚୟ ମିଳେ ।

ସେ ଷ୍ଟାମସ୍, ଷ୍ଟର୍ଲିଂ, ହଣ୍ଟର ପ୍ରଭୃତିଙ୍କ କେତେକ ଐତିହାସିକ ବିବରଣୀର ସଂପାଦନା କରିବା ସଙ୍ଗେ ସଙ୍ଗେ ନିଜେ ମଧ୍ୟ ସ୍ୱତନ୍ତ୍ର ଭାବରେ ଓଡ଼ିଶା ଇତିହାସ ସମ୍ପର୍କରେ ସେହି ଇଂରାଜୀ ଗ୍ରନ୍ଥରେ ବହୁ ଜ୍ଞାତବ୍ୟ ତଥ୍ୟ ସନ୍ନିବେଶ କରିଛନ୍ତି ।

'ଜୟଦେବ'ଙ୍କ ସଂପର୍କରେ 'ଓଡ଼ିଶାର ସାଂସ୍କୃତିକ ବ୍ୟାପାର ବିଭାଗ ପକ୍ଷରୁ ତାଙ୍କର ସଂପାଦନାରେ ଏକ ସ୍ମରଣିକା ପ୍ରକାଶିତ ହୋଇଥିଲା । ଏହି ସ୍ମରଣିକାରେ ଜୟଦେବଙ୍କ ଜନ୍ମପୀଠ, ଓଡ଼ିଶାର ଜୟବିଜୟ ଶିଳାଲେଖ ଇତ୍ୟାଦି ବିଷୟରେ ଅନୁଶୀଳନ କରାଯାଇଛି । ଇଂରାଜୀରେ ଲିଖିତ ଏହି ସ୍ମରଣିକାଟି ଗବେଷକ ମହଲରେ ବିଶେଷ ଆଦୃତ ହୋଇଛି ଓ ତତ୍ସମ୍ପର୍କିତ ବହୁ ଜ୍ଞାତବ୍ୟ ତଥ୍ୟ ରହିଛି ।

କଳିଙ୍ଗ ସେ ପାଳିଭାଷାର ଜନ୍ମଭୂମି ଏ ସଂପର୍କରେ ଉକ୍ତର ସାତୁ ପ୍ରବନ୍ଧଲେଖି ଦୃଢଭାବରେ ପ୍ରମାଣିତ କରିଛନ୍ତି ।

ସମ୍ବଲପୁର ବିଶ୍ୱବିଦ୍ୟାଳୟ ପକ୍ଷରୁ ପ୍ରକାଶିତ 'ସପ୍ତର୍ଷି' ପତ୍ରିକାର ସେ ମୁଖ୍ୟ ସଂପାଦକ । ଏହି ପତ୍ରିକା ମାଧ୍ୟମରେ ସେ ଶିକ୍ଷା ସଂସ୍କୃତି, ଭାଷା-ସାହିତ୍ୟ ଗବେଷଣା ପାଇଁ ଅନୁକୂଳ ବାତାବରଣ ସୃଷ୍ଟି କରିଛନ୍ତି । ତାଙ୍କର ଏସବୁ ଉଦ୍ୟମ ସପ୍ତର୍ଷିର ବିଭିନ୍ନ ସଂପାଦକୀୟ ଲେଖାରେ ପ୍ରତିଫଳିତ । ଓଡ଼ିଶାର ଶିକ୍ଷା ବିକାଶରେ ଏ ପତ୍ରିକାର ଭୂମିକା ସଂପର୍କରେ ୧୯୮୧ ସପ୍ତର୍ଷି ନବବର୍ଷ ସଂଖ୍ୟାରେ ସେ ଉଲ୍ଲେଖ କରିଛନ୍ତି—''ଆଜି ସମ୍ବଲପୁର ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠାର ଚତୁର୍ଦ୍ଦଶ ସାମ୍ବତ୍ସରିକ ଦିବସ । ଆଜି ମଧ୍ୟ ହେଉଛି ବିଶ୍ୱବିଦ୍ୟାଳୟର ସାହିତ୍ୟିକ ମୁଖପତ୍ର ସପ୍ତର୍ଷିର ନବମ ସାମ୍ବତ୍ସରିକ ଜନ୍ମୋତ୍ସବ । ଏହି ପବିତ୍ର ଦିବସରେ ବହୁ ଅନୁଚିନ୍ତା ମନରେ ଜାଗ୍ରତ ହେବା ସ୍ୱାଭାବିକ । ଯେଉଁ ଆଶା ଓ ଅଭିପ୍ସା ନେଇ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା କରାଯାଇଥିଲା, ତାହାର ପରିପୂରଣ ଦିଗରେ କେତେଦୂର ପଦକ୍ଷେପ ଗ୍ରହଣ କରାଯାଇଛି ଏବଂ ସେହି ଗତିପଥରେ କି ପ୍ରକାର ଦୋଷତ୍ରୁଟି ରହିଅଛି, ସେସବୁର ଆତ୍ମସମୀକ୍ଷା ଆଜି ଏକାନ୍ତ କରଣୀୟ । ସ୍ୱାଧୀନତା ଲାଭ ପରେ ସମ୍ବଲପୁର ଅଞ୍ଚଳ ବିଶିଷ୍ଟ ଶିଳ୍ପାଞ୍ଚଳରେ ପରିଣତ ହୋଇଛି ଏବଂ ସବୁଜ ବିପ୍ଳବର ପ୍ରଶସ୍ତ କ୍ଷେତ୍ର ରୂପେ ସ୍ୱୀକୃତି ଲାଭ କରିଅଛି । ଶିକ୍ଷା ଓ ସଂସ୍କୃତି ଦିଗରେ ମଧ୍ୟ ଏହି ଅଞ୍ଚଳ ଉଲ୍ଲେଖଯୋଗ୍ୟ ଭାବରେ ବିକାଶଶୀଳ ହୋଇଅଛି । ଏହି ପରିପ୍ରେକ୍ଷୀରେ ସମ୍ବଲପୁର ବିଶ୍ୱ-ବିଦ୍ୟାଳୟର ଭୂମିକା ଅତୀବ ଗୁରୁତ୍ୱପୂର୍ଣ୍ଣ । ଦେଶର ତରୁଣ ତରୁଣୀ-ମାନଙ୍କର ଚିନ୍ତା ଓ ସ୍ୱପ୍ନକୁ ସଫଳ ରୂପାୟନ ପାଇଁ ଏବଂ ସେମାନଙ୍କ

ସମୁଜ୍ଜ୍ୱଳ ଭବିଷ୍ୟତର ପ୍ରସ୍ତୁତି ନିମନ୍ତେ ବିଶ୍ୱବିଦ୍ୟାଳୟ ଉପଯୁକ୍ତ ପରିବେଶ ସୃଷ୍ଟି କରିବା ଆବଶ୍ୟକ ।" ଡକ୍ଟର ସାହୁଙ୍କ ଏସବୁ ସଂପାଦକୀୟ ମନ୍ତବ୍ୟରେ ଓଡ଼ିଶାର ଶିକ୍ଷା ଓ ସଂସ୍କୃତିର ବିକାଶ ପାଇଁ ଗଭୀର ଆଗ୍ରହ ପ୍ରକଟିତ ହୋଇଛି ।

(ଖ) ଓଡ଼ିଶାର ଇତିହାସ ରଚନାରେ ଭୂମିକା :

ଓଡ଼ିଶାର ଇତିହାସ ରଚନାରେ ମୁଷ୍ଟିମେୟ ଇତିହାସ-ଅଧ୍ୟାପକ ଉଦ୍ୟମ କରିଛନ୍ତି । କାରଣ ଓଡ଼ିଶା ଇତିହାସ ସକାଶେ ଏବେ ସୁଦ୍ଧା ବହୁ ଉପାଦାନ ଅନାଲୋଚିତ, ଅନାଲୋକିତ ଓ ଅନାବିଷ୍କୃତ ଅବସ୍ଥାରେ ଇତସ୍ତତଃ ପଡ଼ିରହିଛି, ଏସବୁ ସଂଗ୍ରହକରି ଓଡ଼ିଶା ଇତିହାସ ରଚନା ଏକ ଶ୍ରମସାଧ୍ୟ ବ୍ୟାପାର । ଏହେତୁ ଓଡ଼ିଶା ଇତିହାସପ୍ରତି ଅଧିକାଂଶ ଇତିହାସ-ଅଧ୍ୟାପକ ବୀତଶ୍ରଦ୍ଧ । ମାତ୍ର ଡକ୍ଟର ସାହୁ ତାଙ୍କ ଅଧ୍ୟାପକ ଜୀବନର ପ୍ରାରମ୍ଭରେ ଏପରିକି ଛାତ୍ର ଅବସ୍ଥାରୁ ଓଡ଼ିଶା ଇତିହାସ ପ୍ରତି ଗଭୀର ଶ୍ରଦ୍ଧା ପୋଷଣ କରିଆସିଛନ୍ତି । ତାଙ୍କର ଓଡ଼ିଶା ପ୍ରତି ଶ୍ରଦ୍ଧା ଓ ଇତିହାସ ଅଧ୍ୟୟନ ପ୍ରତି ସମ୍ମାନ ହେତୁ ଓଡ଼ିଶା ଇତିହାସର ଅଜ୍ଞାତ ଅଥଚ ବହୁ ପ୍ରସିଦ୍ଧ ଦିଗ ଅନେକରି ଆଲୋକକୁ ଆସିପାରିଛି । ସେ 'Buddhism in Orissa' ଶୀର୍ଷକ ଯେଉଁ ସନ୍ଦର୍ଭ ଲେଖି ପିଏଚ୍. ଡ଼ି. ଲାଭ କରିଛନ୍ତି, ତାହା ସେହି ଧରଣର ସନ୍ଦର୍ଭ ବିରଳ । ସେଥିରେ ସେ ଓଡ଼ିଶାର ବିଭିନ୍ନ ସ୍ଥାନର ବୌଦ୍ଧକୀର୍ତ୍ତିମାନଙ୍କର ଅଧ୍ୟୟନ କରି ସେସବୁକୁ ଯେଉଁ ଗଭୀର ଅନ୍ତର୍ଦୃଷ୍ଟି ନେଇ ଆଲୋଚନା କରିଛନ୍ତି, ତାହା ବାସ୍ତବିକ ଗଭୀର ଧୀଶକ୍ତି ଓ ମନୀଷାର ପରିଚାୟକ । ଏଥିରେ ସେ ଓଡ଼ିଶାର ବିଭିନ୍ନ ଅଞ୍ଚଳର ଦୁର୍ଲ୍ଲଭ ବୌଦ୍ଧମୂର୍ତ୍ତି ଗୁଡ଼ିକର ଚିତ୍ର-ଗୁଡ଼ିକୁ ମଧ୍ୟ ଉପସ୍ଥାପିତ କରିଛନ୍ତି । ଓଡ଼ିଶାରେ ବୌଦ୍ଧସିଦ୍ଧାଚାର୍ଯ୍ୟମାନଙ୍କର କାଳ କଳନା ଓ ସେମାନଙ୍କର ସାଧନାର ପୀଠ ସମ୍ବନ୍ଧରେ ସେ ବହୁ ଉଲ୍ଲେଖଯୋଗ୍ୟ ତଥ୍ୟ ପ୍ରଦାନକରି ପାରିଛନ୍ତି । ତାଙ୍କର 'ଓଡ଼ିଶାରେ ବୌଦ୍ଧଧର୍ମ' ଏକ କ୍ଷୁଦ୍ର ପୁସ୍ତିକା ସତ୍ୟ କିନ୍ତୁ ଉପଜୀବ୍ୟ ଦୃଷ୍ଟିରୁ ଏକ ମହାର୍ଘ ସମ୍ପଦ । ଅନୁରୂପ ଭାବରେ ଭାରତର ନୌବାଣିଜ୍ୟ ସମ୍ପର୍କିତ ତାଙ୍କର କ୍ଷୁଦ୍ର ପୁସ୍ତକ ସଂକ୍ଷେପରେ ଅତୀତର ସମୃଦ୍ଧ ନୌବାଣିଜ୍ୟର

ପ୍ରାଣ୍ଟ୍ରଣ୍ଡନ ସତ୍ୱତ ଆମକୁ ପରିଚିତ କରିପାରିଛୁ । ତାଙ୍କର ଅନ୍ୟାନ୍ୟ ଉଲ୍ଲେଖଯୋଗ୍ୟ କୃତି ମଧ୍ୟରେ 'A history of Orissa (2 volumes)' ଓଡ଼ିଆ ଜାତିର ଇତିହାସ (ପ୍ରାଚୀନ କଳିଙ୍ଗ) ପ୍ରଥମଭାଗ ଏ ଦେଶର ଗବେଷକମାନଙ୍କ ନିକଟରେ ବେଶ ଆଦରଣୀୟ ହୋଇ-ପାରିଛି ।

ଓଡ଼ିଆ ଜାତିର ଇତିହାସ ଗ୍ରନ୍ଥର ଭୂମିକାରେ ତାଙ୍କ ମନ ଓ ପ୍ରାଣର ସକଳ ବାଞ୍ଛାପୂର୍ଣ ସେ ଖୋଲି ଦେଇଛନ୍ତି··· "ପ୍ରାଦେଶିକ ବିଭବରେ ପରିପୂର୍ଣ୍ଣ ଏହି ରାଜ୍ୟର ଗୌରବମୟ ଅତୀତ ତମିସାଚ୍ଛନ୍ନ ହୋଇ ପଡ଼ି ରହିଲେ ଭାରତବର୍ଷର ଇତିହାସ ଯେ ବିକଳାଙ୍ଗ ହୋଇ-ଯିବ, ତାହା ସୁନିଶ୍ଚିତ । ଆଞ୍ଚଳିକ ଇତିହାସର ଗବେଷଣା ଓ ନିର୍ମାଣ ଭାରତୀୟ ଇତିହାସର ପରିପୁଷ୍ଟି ନିମନ୍ତେ ଅତି ଗୁରୁତ୍ୱପୂର୍ଣ୍ଣ । ସେହି ଦୃଷ୍ଟିରୁ ଓଡ଼ିଆ ଇତିହାସର ସୁସଂକଳନ ନିତାନ୍ତ ଆବଶ୍ୟକ × × × ଏହି ଓଡ଼ିଆ ଜାତିର ଇତିହାସ ଏ ଦିଗରେ ଏକ କ୍ଷୁଦ୍ର ଉଦ୍ୟମ ମାତ୍ର ।"

ସେ ପୁଣି ଲେଖିଛନ୍ତି···"ଜାତୀୟ କ୍ରିୟାକଳାପ ଓ ସାଂସ୍କୃତିକ ପରମ୍ପରାର ଏକମାତ୍ର ବିଶ୍ୱାସ୍ୟ ଆଧାର ହେଉଛି ଜାତିର ଇତିହାସ । ତାହା ଯଦି ବିକୃତ ବା ବିକଳାଙ୍ଗ ହୋଇ ରହେ, ସମଗ୍ର ଜାତି ପଶ୍ଚାତ୍-ପଦ ଅବସ୍ଥାରେ ପଡ଼ି ରହିବା ଆଶଙ୍କା ହୁଏ । ଆଜି ପର୍ଯ୍ୟନ୍ତ ବହୁ କାହାଣୀ, କିମ୍ବଦନ୍ତୀ ଓ ଜନଶ୍ରୁତିକୁ ଆଶ୍ରୟ କରି ଓଡ଼ିଆ ଜାତିର ଗୌରବମୟ ଅତୀତର ପରିଚୟ ପ୍ରଦାନ କରାଯାଉଥିବା ଅତ୍ୟନ୍ତ ଦୁର୍ଭାଗ୍ୟର ବିଷୟ । ବିଗତ ଅଳ୍ପ କେତେକ ବର୍ଷ ମଧ୍ୟରେ ଓଡ଼ିଶାର ଇତିହାସ ଓ ସଂସ୍କୃତି ସମ୍ପର୍କରେ ଯେଉଁ ଅମୂଲ୍ୟ ଉପାଦାନମାନ ଉଦ୍ଧାର କରାଯାଇଅଛି, ତାହା ସାହାଯ୍ୟରେ ଇତିହାସର ଅନେକ ଅଜ୍ଞାତ ତଥ୍ୟ ଆଲୋକିତ ହୋଇ ପାରିଅଛି ଏବଂ ବହୁକାଳରୁ ପୁଞ୍ଜିଭୂତ ସନ୍ଦେହ ଦୂର ହୋଇଛି । ଆଜି ଓଡ଼ିଶାର ଇତିହାସ ବିବାଦୀୟ ବିଷୟବସ୍ତୁ ଗୁଡିକର ସମାହାର ନୁହେଁ । ତାହା ଘଟଣାବହୁଳ ଅତୀତର ଅବିସମ୍ବାଦିତ ଧାରାବାହିକ ବିବରଣୀ । ଏହାହିଁ ଏହି ଗ୍ରନ୍ଥର ପ୍ରତିପାଦ୍ୟ ।"

'ଓଡ଼ିଆ ଜାତିର ଇତିହାସ' ପ୍ରଥମ ଖଣ୍ଡରେ ସେ 'କଳିଙ୍ଗର ପରିଚୟ', ଆଦିମ ମାନବଜାତି, ନନ୍ଦରାଜତ୍ୱ, ମୌର୍ଯ୍ୟ ଶାସନାଧୀନରେ କଳିଙ୍ଗ, ମହାମେଘବାହନ ଖାରବେଳ, ପ୍ରାଚୀନ ଓ ମଧ୍ୟ ଯୁଗର ସନ୍ଧିକାଳ, ଦ୍ୱୀପାନ୍ତର କଳିଙ୍ଗ ଓ କଳିଙ୍ଗର ଭାଷା ପ୍ରଭୃତି ଆଲୋଚନା ଗୁଡ଼ିକ ସାର୍ଥକ ଇତିହାସର ପରିଚୟ ।

ଓଡ଼ିଶାର ସଂସ୍କୃତି, ପ୍ରାଚୀନ କୀର୍ତ୍ତି ପ୍ରଭୃତି ସମ୍ପର୍କରେ ତାଙ୍କର ଅର୍ଦ୍ଧଶତାବ୍ଦୀରୁ ଊର୍ଦ୍ଧ୍ୱ ସନ୍ଦର୍ଭର ଅନୁଶୀଳନ କଲେ ଜଣେ ଜାଣିପାରେ ପ୍ରକୃତରେ ସେ ଗବେଷଣାର ମାନଦଣ୍ଡ । ଅଧୁନା ଲଙ୍କା ସମ୍ପର୍କୀୟ ତାଙ୍କର ଗବେଷଣା ଓଡ଼ିଶାରେ ବେଶ ଚମକ ସୃଷ୍ଟି କରିଛି । ସେ ଲଙ୍କାକୁ ଉଡ୍ଡୀୟାନ ପୀଠର ଅନ୍ତର୍ଗତ ବୋଲି କହିଛନ୍ତି ଓ ନିଜ ମତର ପରିପୋଷକତା ପାଇଁ ସେ ସୋନପୁର ରାଜା ସୋମେଶ୍ୱର ଦେବଙ୍କ ତାମ୍ର ଶାସନର ଉଲ୍ଲେଖ କରିଛନ୍ତି ।

କେବଳ ଓଡ଼ିଶା ଓ ଭାରତରେ ନୁହେଁ, ସୋଭିଏତ୍ ରୁଷିଆ ଓ ପୂର୍ବ ଇଉରୋପର ବହୁଦେଶରେ ମଧ୍ୟ ତାଙ୍କର ଭ୍ରମଣକାଳରେ ଓଡ଼ିଶା ଓ ଭାରତବର୍ଷର ଇତିହାସ ସମ୍ପର୍କରେ ସେ ପାଣ୍ଡିତ୍ୟପୂର୍ଣ୍ଣ ବିବରଣୀ ଦେଇ ବିଦେଶରେ ଏ ଜାତିର ଗୌରବ ବୃଦ୍ଧି କରିଛନ୍ତି ।

ଗବେଷକର ପରିଚୟ ତାର ଗବେଷଣା; ସେଥିରେ ତାର ଆନ୍ତରିକତା, ଆଗ୍ରହ ଓ ତତ୍ପରତା ଅକୁଣ୍ଠ ଅନୁରାଗ ଭିତରେ ତାର ବ୍ୟକ୍ତିତ୍ୱ ଫୁଟିଉଠେ । ପ୍ରଶାସକ ଡ଼ଃ ନବୀନ କୁମାର ସାହୁଙ୍କୁ ହୁଏତ ଦେଶ ଭୁଲିଯିବ, କିନ୍ତୁ ଗବେଷକ ଡ଼ଃ ସାହୁ ନିଶ୍ଚିତ ଥାଆନ୍ତି, ଚିରଦିନ ଜାତୀୟ ଇତିହାସରେ ସେ ସ୍ମରଣୀୟ ହୋଇ ରହିବେ । ଜୀବନର ଅପରାହ୍ନରେ, ବିପୁଳ କାର୍ଯ୍ୟବ୍ୟସ୍ତତା ଭିତରେ ମଧ୍ୟ ଗବେଷଣା ପ୍ରତି ତାଙ୍କର ଗଭୀର ଆଗ୍ରହ ଏଇ ଦିଗ୍‌ର ସଙ୍କେତ ଦେଇଛି ଯେ, ସତେ ଯେପରି ସେ ଓ ଗବେଷଣା ଏକ ଓ ଅଭିନ୍ନ ।



# ସୁଧା-ସନ୍ଧାନୀ ସୁଧାକର

✻ ଡକଟର ସଚ୍ଚିଦାନନ୍ଦ ମହାନ୍ତି

ଦେହରେ ଭିକ୍ଟୋରିଆ ଅମଳର ଖଣ୍ଡେ ମାଟିଆ ହାପ୍ ପ୍ୟାଣ୍ଟ, ତା' ଉପରକୁ ଏଡ୍‌ଓ୍ୱାର୍ଡ୍ ଯୁଗର ଧଳା ହାପ୍ ସାର୍ଟଟି, ଶୁକ୍ଳ କେଶ ଉପରେ ପଞ୍ଚମ ଜର୍ଜ ବେଳର ହ୍ୟାଟ୍, ମଣିବନ୍ଧରେ ଷଷ୍ଠ ଜର୍ଜ କାଳର ଗୋଟିଏ ପକେଟ୍ ଓ୍ୱାଚ୍ ସାଇଜର ଷ୍ଟେଓ୍ୱାଚ୍, ଆଉ ତାହାର ହାତରେ ଧରା ହୋଇଥିବ ଏଲିଜାବେଥ୍ ଅମଳର ଗୋଟିଏ ଚମଡ଼ା ବ୍ୟାଗ୍ । ଆଖିର ଚଷମା ବେଶ୍ ମୋଟା—ଯବକାଚ । ଓଡ଼ିଆ ହେଲେ ବି ସାହାବୀ ବ୍ୟକ୍ତିଟି ସୁଧାକର ପଟ୍ଟନାୟକ । ଷିତ୍ରଗତରେ ସଦା ଚଳମାନ ଏଇ ବ୍ୟକ୍ତିଙ୍କ ସଙ୍ଗେ ହୁଏତ ଆପଣଙ୍କର ଭେଟ ହୋଇଥିବ ଭୁବନେଶ୍ୱର କମ୍ବା କଟକର ବସ୍ ଷ୍ଟାଣ୍ଡ୍‌ରେ, ଭୁବନେଶ୍ୱର ଷ୍ଟେଟ୍ ମିଉଜିଅମ୍, କମ୍ବା କଟକ ଶ୍ରୀରାମଚନ୍ଦ୍ର ଭବନ, ନ ହେଲେ ଗଙ୍ଗାମଢର, ବୈଧିସ୍ ବଜାର ନତୁବା ହଜାରେଗଳିରେ । ତିନ ବୃଦ୍ଧବର୍ଷ ତଳେ ଦେଖିଥିଲେ ତାଙ୍କୁ ଲର୍ଡ ଉଇଲିଅମ୍ ବେଣ୍ଟିଙ୍କଙ୍କ ସାଇକଲ ଉପରେ ଦେଖିଥିବେ । ନବେ ବର୍ଷରେ ଏ ଯୁବକ ଏବେ ବି ହସ ହସ, ସତେଜ, ପ୍ରଫୁଲ୍ଲ । ଘରେ ରୁଗ୍ଣା ପତ୍ନୀ, ଚିନ୍ତା ନାହିଁ—ଦୈନନ୍ଦିନ ଅଭ୍ୟାସରେ ବିରାମ ନାହିଁ । ସ୍ମୃତି କ୍ଷୀଣ ହୋଇ ଆସିଛି । ପଚାରି ବସିଲେ ନିଜ ବିଷୟରେ କିଛି ଉତ୍ତର ଦେଇ ପାରୁନାହାନ୍ତି । କେବେ କୋଉଠି କର୍ମମୟ ଜୀବନ ଯାପନ କଲେ, ସେ ସବୁ ପ୍ରତି ସେ ବିସ୍ମୃତ, ବୀତସ୍ପୃହ । ମାତ୍ର ଅନୁଗୋଳର ଶେଷରଜା ସୋମନାଥ ସିଂହ କେତେ ବର୍ଷ ବେଳେ କୋଉଠି କପଟ କଷ୍ଟ ଭୋଗୁଥିଲେ, ତାଙ୍କୁ ଇଂରେଜମାନେ କପଟ ଚଞ୍ଚକତା କରି ବଦନାମ କରାଇ ବନ୍ଦୀ କଲେ, ସେସବୁ ବିଷୟରେ ତାଙ୍କର ସ୍ମୃତି ଏବେ ବି ପ୍ରଖର । ଓଡ଼ିଶାର ପୁରପଲ୍ଲୀରେ କେଉଁ

ମଧର ସେ କେବେ ଦେଖିଥିଲେ, କେଉଁଠି କେଉଁ ଦେବଦେବୀ କପରି ଅବସ୍ଥାରେ ଅଛନ୍ତି, ତାର ସମ୍ବାଦ ସେ ଏବେ ବି ଦେଇପାରିବେ । ଶହେ ବର୍ଷ ତଳେ ଓଡ଼ିଶାର ସାହିତ୍ୟିକ-ସାଂସ୍କୃତିକ ବାତାବରଣ କିପରି ଥିଲା, ତା'ର ସନ୍ଧାନ ଏବେ ବି ସେ ନିସ୍ପୃମିତ ଭାବେ କହନ୍ତି । ଏହି ସାଧକ ତପସ୍ୱୀ ସତେ ଯେପରି ସାଧନାନିମଗ୍ନ ! ସିଦ୍ଧିର ଆଶାରେ ଅପେକ୍ଷମାଣ !

ଉତ୍କଳର ଏକ ଅଜ୍ଞାତ ମୂଲକ ଅନୁଗୋଳର ପୁରୁଣାଗଡ଼ର ଏକ ପ୍ରାଚୀନ କରଣ ପରିବାରରେ ତାଙ୍କର ଜନ୍ମ । ଗଡ଼ଜାତର ରଜାମାନେ ଶାସନ କାର୍ଯ୍ୟ ପରିଚାଳନା ପାଇଁ କଟକ ବା ପୁରୀ ଅଞ୍ଚଳରୁ କରଣ ଓ ବ୍ରାହ୍ମଣମାନଙ୍କୁ ଆଣି ଅରଣ୍ୟମୟ ଅଞ୍ଚଳରେ ନିଯୁକ୍ତି ଦେଇଥିଲେ । ତାଙ୍କର ପୂର୍ବ ପୁରୁଷ ଏହି ସୂତ୍ରରେ ଆସି ଅନୁଗୋଳରେ ଦୁଇଶ'ବର୍ଷ ଧରି ବସବାସ କରିଥିଲେ । ପିତାମହ କୃତ୍ତିବାସ ପଟ୍ଟନାୟକ ବ୍ରିଟିଶ ଶାସନ ଅମଳରେ ନାମଯାଦା ପୁଲିସ ଅଫିସର ଥିଲେ । କିନ୍ତୁ ତତ୍କାଳୀନ ସଂକ୍ରାମକ ବ୍ୟାଧି 'ମହାମାରୀ' ବସନ୍ତ ରୋଗର ଶିକାର ହୋଇ ସେ ପ୍ରାଣତ୍ୟାଗ କରିଥିଲେ । ପିତାମହଙ୍କ ମୃତ୍ୟୁ ବେଳକୁ ପିତା ମାଗୁଣିଚରଣ ( ଜନ୍ମ ୧୯ । ୧ । ୧୮୭୭ ) ମାତ୍ର ଚାରିମାସର ଦୁଗ୍ଧପୋଷ୍ୟ ଶିଶୁ । ସେ ମଧ୍ୟ ସେହି 'ମାରୀ' ରୋଗାକ୍ରାନ୍ତ ହେବାରୁ ପିତାଙ୍କ ପିତାମହୀଙ୍କ ଯତ୍ନ ଓ ଭଗବତ୍ କରୁଣାରୁ ସେ ବଞ୍ଚିଗଲେ ଓ ସେଇଥିପାଇଁ ହିଁ ତାଙ୍କ ନାମ ରଖାଗଲା 'ମାଗୁଣି' ।

ଅନୁଗୋଳରେ ଅଜ୍ଞାତ ମୂଲକରେ ଶିକ୍ଷାର ଆଲୋକ ପଡ଼ିନଥିଲା । କଟକ ପରି ଦୂରବର୍ତ୍ତୀ ସ୍ଥାନରେ ଯାଇ ରୁଗ୍ଣ ଶିଶୁ ବିଦ୍ୟା ଶିକ୍ଷା କରିବ ଏହା ପିତାମହୀଙ୍କ ଇଚ୍ଛା ନ'ଥିଲା । ଫଳରେ ସେ ୧୮୮୭ ମାର୍ଚ୍ଚ ମାସରେ ଅନୁଷ୍ଠିତ ମଧ୍ୟ-ଭର୍ଣ୍ଣାକୁଲର ପରୀକ୍ଷା ଦେଇ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇଥିଲେ । ତାଙ୍କୁ ଏ ପରୀକ୍ଷାର ପ୍ରମାଣପତ୍ର ଓଡ଼ିଶାର ତତ୍କାଳୀନ ସ୍କୁଲ୍‌ସମୂହର ଜଏଣ୍ଟ ଇନ୍‌ସପେକ୍ଟର ରାଧାନାଥ ରାୟଙ୍କ ଦସ୍ତଖତରେ ୧୭ । ୭ । ୧୮୮୭ରେ ମିଳିଥିଲା ।

ଅନୁଗୋଳରେ ସେତେବେଳେ ଏକମାତ୍ର ଓଡ଼ିଆ ସ୍କୁଲ ରହିଥିଲା । ବହୁ ଆବେଦନ ଫଳରେ ସରକାର ଅନୁଗୋଳର ବିଭିନ୍ନ ସ୍ଥାନରେ ଚାରିଗୋଟି ଅପର ପ୍ରାଇମେରୀ ସ୍କୁଲ୍ ସ୍ଥାପନ କଲେ । ତନ୍ମଧ୍ୟରୁ ଛେଣ୍ଡିପଦାରେ ସ୍ଥାପିତ ସ୍କୁଲ୍‌ରେ ମାଗୁଣିଚରଣ ହେଡ଼ପଣ୍ଡିତ ଭାବରେ ନିଯୁକ୍ତି ପାଇଲେ । ତାଙ୍କର ଅଧ୍ୟାପନାରେ ସୁନାମ ଯୋଗୁଁ ଜପରବେଷ, ତାଳଚେର, ବାମଣ୍ଡା, ଆଠମଲ୍ଲିକ, ରେଢାଖୋଲ ଆଦି ସ୍ଥାନରୁ ଛାତ୍ରମାନେ ଆସି ସେଠାରେ ପଢ଼ିବାକୁ ଲାଗିଲେ ।

ଏହିପରି ଏକ ନମ୍ର ମଧ୍ୟବିତ୍ତ ପରିବାର ହେଲେହେଁ ଆଦର୍ଶ ଶିକ୍ଷକଭାବେ ସୁନାମ ଅର୍ଜନ କରିଥିବା ପିତାଙ୍କର ଦ୍ୱିତୀୟ ପୁତ୍ରଭାବେ ୧୮୯୨ ଅଗଷ୍ଟ ଷୋଳ ତାରିଖରେ ଜନ୍ମହେଲେ ସୁଧାକର । ଜ୍ୟେଷ୍ଠ-ଭ୍ରାତା ଦିବାକର ଓ କନିଷ୍ଠ ବିଶ୍ୱେଶ୍ୱରଙ୍କ ସହିତ ଛେଣ୍ଡିପଦା ସ୍କୁଲରେ ପିତାଙ୍କ ନିକଟରୁ ହିଁ ବିଦ୍ୟାଧ୍ୟୟନ ଆରମ୍ଭ କଲେ । ତା'ପରେ ଅନୁଗୋଳ ଟାଉନ୍‌ରେ ଛାତ୍ରବୃତ୍ତି ସ୍କୁଲ୍‌ରେ ଅଧ୍ୟୟନ ଓ ପରେ ଢେଙ୍କାନାଳ ହାଇସ୍କୁଲ୍‌ରୁ ୧୯୧୧ରେ ମାଟ୍ରିକ୍ୟୁଲେସନ୍ ପାଶ୍ କରି ମାସିକ ଚାରିଟଙ୍କା ହାରରେ 'ମେୟୋ ବୃତ୍ତି' କଟକ ଜିଲ୍ଲାବୋର୍ଡ଼ରୁ ଲାଭକଲେ ।

ରେଭେନ୍ସା କଲେଜରୁ ଆଇ. ଏ. ପାଶ୍‌କଲେ ସତ୍ୟ, ମାତ୍ର କଟକରେ ରଖାଇ ବ୍ୟୟଭାର ବହନ କରିବା ପିତାଙ୍କ ପକ୍ଷେ ସମ୍ଭବ ନ ହେବାରୁ କଲେଜ ଛାଡ଼ି କିଛିଦିନ ଅନୁଗୋଳ ଜିଲ୍ଲା ପୋଲିସ ଅଫିସରେ କିରାଣୀ କାର୍ଯ୍ୟ କଲେ । ଏହାର ଅଳ୍ପ କେତେଦିନ-ପରେ ବିହାର ଓ ଓଡ଼ିଶା ବଙ୍ଗଦେଶରୁ ପୃଥକ୍ ହୋଇ ଯାଆନ୍ତେ ତାଙ୍କ ଚାକିରିଟି ବିହାରର ହଜାରିବାଗକୁ ସ୍ଥାନାନ୍ତରିତ ହୋଇଗଲା, ମାତ୍ର ହଜାରିବାଗରେ ଅସୁସ୍ଥ ହେବାରୁ ଚାକିରିରୁ ଇସ୍ତଫା ଦେଇ ଦୁଇମାସ ପରେ ପୁନର୍ବାର ଅନୁଗୋଳ ଫେରିଆସିଲେ ।

ପୁଣି ମାସକ ପରେ ରେଭେନ୍ସା କଲେଜରେ ନାମ ଲେଖାଇ ଦର୍ଶନ ଓ ଅର୍ଥନୀତି ବିଷୟ ନେଇ ବି. ଏ. ପଢ଼ିଲେ । ସେ ବି. ଏ. ପାଶ୍ କଲାବେଳକୁ ବଡ଼ ଭାଇ ଦିବାକର ପଟ୍ଟନାୟକ ବି. ଏ ପାଶ

କର ତାଳଚେରେ ନବସ୍ଥାପିତ ହାଇସ୍କୁଲରେ ହେଡ୍‌ମାଷ୍ଟର ହୋଇ ଥାଆନ୍ତି । ତାଳଚେରର ତତ୍‌କାଳୀନ ରଜା କିଶୋରଚନ୍ଦ୍ର ହରିଚନ୍ଦନ ସୁଧାକରଙ୍କୁ ଡକାଇ ନେଇ ସେହି ହାଇସ୍କୁଲରେ ଆସିଷ୍ଟାଣ୍ଟ ହେଡ଼ମାଷ୍ଟର ପଦବୀରେ ନିଯୁକ୍ତ ଦେଲେ ।

ଏହି ସମୟରେ (ପ୍ରାୟ ୧୯୧୮) ସେ ତାଳଚେର ସମ୍ପର୍କରେ କେତୋଟି ପ୍ରତ୍ନତାତ୍ତ୍ୱିକ ଗବେଷଣା ସମ୍ବଳିତ ସନ୍ଦର୍ଭ ଲେଖି ସାମୟିକ ପତ୍ର ପତ୍ରିକା 'ଉତ୍କଳସାହିତ୍ୟ' ଓ 'ମୁକୁର' ଆଦିରେ ପ୍ରକାଶ କଲେ । ତନ୍ମଧ୍ୟରୁ ତାଳଚେର ଦୁର୍ଗ ନିକଟବର୍ତ୍ତୀ ଚର୍ଣ୍ଣିମେଶ୍ୱର ମହାଦେବ ମନ୍ଦିର, ବ୍ରାହ୍ମଣୀ ନଦୀର ଅରେ ପାର୍ଶ୍ୱବର୍ତ୍ତୀ ପ୍ରସ୍ତର ଉପରେ ଖୋଦିତ 'ସାରଙ୍ଗ' ଓ 'ଗ୍ରାମକୋଣ୍ଡ'ର ପ୍ରକାଣ୍ଡକାୟ ବିଷ୍ଣୁମୂର୍ତ୍ତି ଆଦି ସ୍ମରଣୀୟ ।

ଓଡ଼ିଶାର ଶିକ୍ଷାବିଭାଗରେ ସବ୍‌ଡିଭିଜନାଲ୍ ସ୍କୁଲ୍ ଇନ୍‌ସ୍‌ପେକ୍ଟର ନିମନ୍ତେ ନିଯୁକ୍ତି ନିମିତ୍ତ ବିଜ୍ଞାପନ ବାହାରିଲା । ରେଭେନ୍‌ସା କଲେଜରେ ଏକଦା ଅଧ୍ୟାପକ ଥିବା W. V. Duke ସାହେବ ସେତେବେଳେ ସ୍କୁଲ୍-ଇନ୍‌ସପେକ୍ଟର । ସୁଧାକର ଏହି କର୍ମପାଇଁ ପ୍ରାର୍ଥୀ ହୋଇ ଦରଖାସ୍ତ କରନ୍ତେ ସାହେବ ସେ କାର୍ଯ୍ୟରେ ନିଯୁକ୍ତ ଦେଇଦେଲେ । ଉକ୍ତ ଚାକିରି ଗ୍ରହଣକରି ବାଲେଶ୍ୱରରେ ଯୋଗଦେବାର ଦୁଇମାସ ପରେ ବିହାର-ଓଡ଼ିଶା ଏକଜିକ୍ୟୁଟିଭ୍ ସର୍ଭିସ୍ ପରୀକ୍ଷା ଫଳ ପ୍ରକାଶିତ ହେଲା ଏବଂ ସେ 'ସବ୍‌ଡେପୁଟି' ଭାବରେ ଅନୁଗୋଳ ଡେପୁଟୀ କମିଶନରଙ୍କ ଅଫିସରେ 'ପ୍ରୋବେସନର୍' (ଶିକ୍ଷାନବୀଶ୍) ରୂପେ ଯୋଗଦେଲେ । ସେତେବେଳେ ଅନୁଗୋଳ ଏକ ସ୍ୱତନ୍ତ୍ର ଜିଲ୍ଲାରୂପେ ଗଣାହୋଇଥିଲା । ସେଠାରେ ତାଙ୍କର ତାଲିମ ଓ ବିଭାଗୀୟ ପରୀକ୍ଷା ଶେଷ ହେବାପରେ ସମ୍ବଲପୁର ଜିଲ୍ଲାକୁ ବଦଳି ହେଲା ।

ସେତେବେଳେ ସମ୍ବଲପୁର ଜିଲ୍ଲାର ଡେପୁଟୀ କମିଶନର ଥିଲେ ହଟର୍ଣ୍ଣ ଲୁଇସ୍ ସାହେବ । ପରବର୍ତ୍ତୀ କାଳରେ ସେ ଓଡ଼ିଶାର ଗଭର୍ଣ୍ଣର ମଧ୍ୟ ହୋଇଥିଲେ । ଜିଲ୍ଲା ସଦର ମହକୁମାରେ ସବ୍‌ଡେପୁଟି ପଦ ଖାଲି ନ ଥିବାରୁ ଲୁଇସ୍ ସାହେବ ତାଙ୍କୁ 'ପଦ୍ମପୁର' ତହସିଲ୍‌ଦାର କାର୍ଯ୍ୟଭାର

ଅର୍ପଣ କଲେ । ପୁଣି 'ବରଗଡ଼' ତହସିଲ୍ ଦାର 'ଓଡ଼ିଶା ବନ୍ଦୋବସ୍ତ'କୁ ବଦଳି ହୋଇଯିବାରୁ ସେ ତହସିଲ୍ ର ଦାୟିତ୍ୱ ମଧ୍ୟ ସୁଧାକରଙ୍କ ଉପରେ ନ୍ୟସ୍ତ ହେଲା । ସେ ଉଭୟ ତହସିଲ୍ ର କାର୍ଯ୍ୟ ପରି-ଚାଳନାରେ ଜଣେ ସୁଦକ୍ଷ ପ୍ରଶାସକର କୃତିତ୍ୱ ଅର୍ଜନ କରିବା ସଙ୍ଗେ ସଙ୍ଗେ ସେହି ଉଭୟ ସ୍ଥାନର ପ୍ରତ୍ନତାତ୍ତ୍ୱିକ ଅନୁସନ୍ଧାନ ଓ ସାଂସ୍କୃତିକ ଉନ୍ନତି ବିଧାନରେ ବ୍ରତୀ ରହିଲେ ।

ପଦ୍ମପୁର ତହସିଲ୍ ବୋଡ଼ାସମ୍ବର ଜମିଦାର ଲାଲ୍ ରତ୍ନାକର ସିଂହ ବରିହା ନାମକ ଏକ ଆଦିବାସୀ ବିଂଝାଳ ଜାତୀୟ ଲୋକଙ୍କ ଅଧୀନରେ ଥିଲା । ବିଂଝାଳମାନେ ଆପଣାକୁ ବିନ୍ଧ୍ୟଗିରିବାସୀ ବୋଲି ପରିଚିତ କରାଉଥିଲେ ଏବଂ ସେମାନଙ୍କ ଭାଷା ସମ୍ବଲପୁରୀଠାରୁ କେତେକାଂଶରେ ପୃଥକ୍ ଥିଲା । ପଦ୍ମପୁର ଅବସ୍ଥାନ କାଳରେ ନୃସିଂହନାଥର ପାହାଡ଼ ଓ ପ୍ରସ୍ରବଣ ସୁଧାକରବାବୁଙ୍କୁ ପ୍ରତ୍ନତାତ୍ତ୍ୱିକ ଅନୁସନ୍ଧାନ ନିମନ୍ତେ ପ୍ରେରଣା ଯୋଗାଉଥିଲା । ବୈଜଳ ଦେବଙ୍କ ଶିଳାଲେଖ ଦେଖିବା ସଙ୍ଗେ ସଙ୍ଗେ ନୈସର୍ଗ ପ୍ରକୃତିର ଅପରୂପ ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ସେ ଦିନେ ପାହାଡ଼ର ସୁଉଚ୍ଚ ଭେଦକରି ଶିଖର ଦେଶକୁ ଉଠି ମନୋରମ ସୂର୍ଯ୍ୟୋଦୟର ଆଭା ସନ୍ଦର୍ଶନ କରିଥିଲେ ।

ବରଗଡ଼ ଅନ୍ତଃପାତି ବରପାଲିର କବି ଗଙ୍ଗାଧର ମେହେରଙ୍କ ସହିତ ସାହିତ୍ୟ ଆଲୋଚନା ମଧ୍ୟ ଚାଲୁଥିଲା । ବରଗଡ଼ରେ ବର୍ଷେ କଟିବାପରେ ଓଡ଼ିଶା ସେଟଲମେଣ୍ଟକୁ ଯିବାକୁ ହେଲା । ବର୍ଷକପରେ ପୁନର୍ବାର ବରଗଡ଼ରେ ସେକେଣ୍ଡ ଅଫିସର ଭାବରେ, ତା'ପରେ ଆଉଥରେ ଦ୍ୱିବର୍ଷ ପାଇଁ ସେଟଲ୍ ମେଣ୍ଟ କାର୍ଯ୍ୟରେ ରହିବାକୁ ପଡ଼ିଲା ।

ସେଟଲ୍ ମେଣ୍ଟ କାର୍ଯ୍ୟ କରିବାବେଳେ ସରକାରୀ ଧରାବନ୍ଧା କାର୍ଯ୍ୟ ବାହାରେ ଇଲାକା ମଧ୍ୟରେ ଥିବା ପ୍ରତ୍ନତାତ୍ତ୍ୱିକ ଅବଶେଷମାନଙ୍କ ସମ୍ପର୍କରେ ଅନେକ ରିପୋର୍ଟ ସେ ଲେଖି ପଠାଉଥିଲେ । ତତ୍‌କାଳୀନ ସେଟଲ୍ ମେଣ୍ଟ ଅଫିସରମାନଙ୍କ ମଧ୍ୟରେ ମାକସ୍ ଫିଲ୍ଡ଼ ସାହେବ,

ଡାଲ୍‌ଜ୍ୱେଲ୍‌ ସାହେବ ଓ କମିଶନର ଫିଲିପ୍‌ ସାହେବ ତାଙ୍କର ଏ ପ୍ରକାର କର୍ମକୁଶଳତାର ଭୂରିପ୍ରଶଂସା କରୁଥିଲେ । ସେହି ସମୟରେ ସେ ଖୋର୍ଦ୍ଧାର ଅଞ୍ଚଳର ପ୍ରାଚୀନ କୀର୍ତ୍ତିମାନଙ୍କ ସମ୍ପର୍କରେ ପ୍ରବନ୍ଧମାନ ଲେଖିଥିଲେ ଏବଂ 'ବିହାର ଓ ଓଡ଼ିଶା ଗବେଷଣା ସମିତି'ର ଏକ ସକ୍ରିୟ ସଭ୍ୟ ହୋଇଥିଲେ । ସେଟ୍‌ଲମେଣ୍ଟ କାମ ଶେଷ ହେବାପରେ ରାଜସ୍ୱ ବିଭାଗକୁ ପ୍ରତ୍ୟାବର୍ତ୍ତନ କରିବାବେଳକୁ ତାଙ୍କୁ ପ୍ରାଚୀନ ଖୋର୍ଦ୍ଧା ଦୁର୍ଗର ପ୍ରତ୍ନତାତ୍ତ୍ୱିକ ବିବରଣୀ ସଂଗ୍ରହ କରିବାକୁ ଆଦେଶ ଦିଆଗଲା । ଏହି କର୍ମ ସେ ଉତ୍ସାହର ସହିତ ସମାପନ କରିଥିଲେ । ପ୍ରଚଣ୍ଡ ଗ୍ରୀଷ୍ମ-କାଳରେ ସୁଦ୍ଧା ଏ କଠୋର ପରିଶ୍ରମ କରିବାରେ ତାଙ୍କର ତିଳେ ବି କୁଣ୍ଠା ନ ଥିଲା । ଦିନେ ଅର୍ଦ୍ଦଳି ସହିତ ସେହି ପ୍ରାଚୀନ ଦୁର୍ଗକୁ ସେ ଗଲାବେଳେ ପ୍ରାୟ ପନ୍ଦର କୋଡ଼ିଏଟି ବଣୁଆ ବଳିଆ କୁକୁରଙ୍କ ଦାବୁଡ଼ରେ ପଡ଼ିଯାଇଥିଲେ । ବିଚଳିତ ନ ହୋଇ ଧୀର ସ୍ଥିରଭାବରେ ଅପେକ୍ଷା କରିବାରୁ ସେମାନେ ଆକ୍ରାନ୍ତ ନ କରି ଚାଲିଗଲେ । ତା'ପରେ ପୁଣି ସେ ତାଙ୍କ କାର୍ଯ୍ୟରେ ଲାଗିରହିଲେ । ଖୋର୍ଦ୍ଧା ଦୁର୍ଗର ବିବରଣୀ ପାଇ କମିଶନର ଫିଲିପ୍‌ ସାହେବ ଓ ଖୋରଧାର ତତ୍କାଳୀନ ଏସ୍‌. ଡି. ଓ. ରାୟବାହାଦୁର ରାଧାଚରଣ ଦାସ ଅତ୍ୟନ୍ତ ଖୁସି ହୋଇଥିଲେ । ଖୋର୍ଦ୍ଧା କାର୍ଯ୍ୟ ସାରି ସେ କିଛିଦିନ ବାଲେଶ୍ୱରରେ କର୍ମକରି ପୁନର୍ବାର ଆସିଲେ ଖୋରଧାର ବାଣପୁର ଅଞ୍ଚଳକୁ । ସେସମୟରେ ମଧ୍ୟ ଖୋରଧା ଓ ବାଣପୁର ଅଞ୍ଚଳର ପ୍ରାଚୀନ ଦୁର୍ଗ ଓ କୀର୍ତ୍ତିରାଜି ସମ୍ପର୍କରେ ଅନୁସନ୍ଧାନକରି ଗବେଷଣାତ୍ମକ ପତ୍ରିକାରେ ଲେଖାମାନ ପ୍ରକାଶ କରୁଥିଲେ ।

'ମୁକୁର' ସମ୍ପାଦକ ବ୍ରଜସୁନ୍ଦର ଦାସ ଓ 'ଉତ୍କଳ ସାହିତ୍ୟ'ର ସମ୍ପାଦକ ବିଶ୍ୱନାଥ କର, ଗୋପାଳଚନ୍ଦ୍ର ପ୍ରହରାଜ ଓ ଶଶିଭୂଷଣ ରାୟ ଆଦି ସାହିତ୍ୟିକମାନଙ୍କ ସହିତ ଯୋଗସୂତ୍ର ରହିଥିଲା । ରେଭେନ୍‌ସା କଲେଜରେ ଅଧ୍ୟୟନ କାଳରେ 'ମୁକୁର'ରେ ଲେଖାଲେଖି କରୁଥିବାରୁ ବ୍ରଜସୁନ୍ଦରଙ୍କ ସହିତ ଘନିଷ୍ଠ ପରିଚୟ ଥିଲା । ସୁଧାକରଙ୍କ ପ୍ରଦତ୍ତ ସମ୍ବାଦ କ୍ରମେ ବ୍ରଜସୁନ୍ଦର ବିହାର-ଓଡ଼ିଶା ଲେଜିସ୍‌ଲେଟିଭ୍‌ କାଉନ୍‌-ସିଲ୍‌ରେ ସୁପ୍ତ ଅଙ୍ଗୀତ ଅନୁଗୋଳ ସମ୍ବନ୍ଧରେ ନାନା ପ୍ରଶ୍ନ କରି

ଅନୁଗୋଳର ତତ୍କାଳୀନ ରାଜସ୍ୱ ଉପଭୋଗ କରୁଥିବା ଆଙ୍ଗ୍ଲୋ-ଇଣ୍ଡିଆନ୍ ଡେପୁଟି କମିଶନରଙ୍କୁ କିଛିକାଳ ବ୍ୟତିବ୍ୟସ୍ତ କରି-ପକାଇଲେ । ଶେଷରେ ଏପରି ହେଲା ଯେ, ସରକାରଙ୍କୁ ନିୟମ ପର୍ଯ୍ୟନ୍ତ ବଦଳାଇବାକୁ ପଡ଼ିଲା । ଅନୁଗୋଳ ସମ୍ପର୍କରେ କେହି ପ୍ରଶ୍ନ ପଚାରି ପାରିବେ ନାହିଁ । ଅନୁଗୋଳର ଡେପୁଟି କମିଶନରମାନେ ସେ ଅଞ୍ଚଳର କୌଣସି ପିଲା ଉଚ୍ଚଶିକ୍ଷା ପାଇବାକୁ ପସନ୍ଦ କରୁ ନ ଥିଲେ । କିନ୍ତୁ ତେବେ ବ୍ରଜସୁନ୍ଦର ବାବୁଙ୍କ ଯତ୍ନରେ ଅନୁଗୋଳ ପିଲାଙ୍କ ପାଇଁ ରେଭେନ୍‌ସା କଲେଜ ଏଣ୍ଟ୍ ସ୍କୁଲରେ ଅଧ୍ୟୟନ ପାଇଁ ଦୁଇ ଗୋଟି ଓ ରେଭେନ୍‌ସା କଲେଜରେ ଅଧ୍ୟୟନ ପାଇଁ ଗୋଟିଏ ବୃତ୍ତିର ବ୍ୟବସ୍ଥା ହେଲା । ଏପରି ବନ୍ଦୋବସ୍ତ କରାଇବା ମୂଳରେ ଥିଲେ ସୁଧାକରବାବୁ ।

'ଉତ୍କଳ ସାହିତ୍ୟ ସମାଜ'ର ଜଣେ ସକ୍ରିୟ ସଭ୍ୟ ହୋଇ ସେ ତାହାର ଉନ୍ନତିବିଧାନକଳ୍ପେ ସତତ ପ୍ରଯତ୍ନ କରିଥିଲେ । ଏହି ସମାଜର ସାଗ୍ଦନ ଧରି ସେ ସମ୍ପାଦକ ଓ ପରେ ସଭାପତି ମଧ୍ୟ ରହିଥିଲେ । ଓଡ଼ିଶାର ରାଜନ୍ୟମଣ୍ଡଳୀ ଓଡ଼ିଆ ଭାଷା ଓ ସାହିତ୍ୟର ଉନ୍ନତି ପାଇଁ କଲିକତା ବିଶ୍ୱବିଦ୍ୟାଳୟ ଓ କଲିକତା କର୍ପୋରେସନ୍ ଆଦିକୁ ଦାନ କରୁଥିଲେ । ଏଭଳି କେତେକ ଦାନ ସମ୍ପର୍କରେ ଅବଗତ ହୋଇ ଶ୍ରୀଯୁକ୍ତ ପଟ୍ଟନାୟକ ଉତ୍କଳ ସାହିତ୍ୟ ସମାଜର ସେ ଅର୍ଥ ବହୁବାର ପତ୍ରାଳାପ କରି ଆଦାୟ କରିବାକୁ ସମର୍ଥ ହୋଇଥିଲେ ।

ଢେଙ୍କାନାଳର କବି ବ୍ରଜନାଥ ବଡ଼ଜେନାଙ୍କ ପ୍ରଣୀତ 'ଅମ୍ବିକା ବିଳାସ' କେନ୍ଦୁଝର ରାଜା ବଳଭଦ୍ରନାରାୟଣ ଭଞ୍ଜଙ୍କ ନାମରେ ଭଣିତ ହୋଇ ପଣ୍ଡିତ ବାନାମ୍ବର ଆଚାର୍ଯ୍ୟଙ୍କ ଦ୍ୱାରା ସମ୍ପାଦିତ ହୋଇଥିଲା । କବି ବ୍ରଜନାଥଙ୍କ ଏ କାବ୍ୟକୃତିର ଗୌରବ ତାଙ୍କୁ ଅର୍ପଣ କରିବା ଉଦ୍ଦେଶ୍ୟରେ ସୁଧାକରବାବୁ ଉତ୍କଳସାହିତ୍ୟ ସମାଜରେ ପ୍ରବନ୍ଧ ପାଠ କରିଥିଲେ ଏବଂ ଏ ସଂପର୍କରେ ମସୀଯୁଦ୍ଧରେ ଅବତୀର୍ଣ୍ଣ ହୋଇଥିଲେ । ପରିଶେଷରେ ଏହି ଭ୍ରାନ୍ତି ଭଞ୍ଜନ ହୋଇ ତାହା ବ୍ରଜନାଥଙ୍କର ବୋଲି ସ୍ୱୀକୃତ ହେଲା ।

'ସମର ତରଙ୍ଗ' ଓ 'ଚତୁରବିନୋଦ'ର ସଂପାଦନା କରି ସେ ବ୍ରଜନାଥଙ୍କ ସଂପର୍କରେ ବହୁ ନୂତନ ତଥ୍ୟ ଅଲୋକକୁ ଆଣିବାରେ

କେଳିକଳାନିଧି, ଦଶପୋଇ, ଗୋପୀବିହାର, ରାଜସନ୍ଦ, ଚଣ୍ଡିମାଳଶ୍ରୀ, ଜଣାଣ ଓ ସଙ୍ଗୀତ ଶ୍ୟାମରାସୋତ୍ସବ, ବାଚସ୍ତଣା ଓ ଅମ୍ବିକାବିଳାସ ଆଦି ଏକତ୍ରକରି ବ୍ରଜନାଥ ଗ୍ରନ୍ଥାବଳୀ ସମ୍ପାଦନା କଲେ । 'ସମରତରଙ୍ଗ' ସଂପାଦନାକାଳରେ ସେକାଳରେ ବ୍ୟବହୃତ ଅସ୍ତ୍ରଶସ୍ତ୍ର ଆଦିର ପରିଚୟ ଦେଇଥିଲେ । ସଂସ୍କୃତରେ ଲିଖିତ କାବ୍ୟମାଳା, ଗୁଚ୍ଛକ ୨ ସଂପାଦନା କରି ସମ୍ପାଦକ ଏସ୍. ଏନ୍. ଦାସଗୁପ୍ତ ତେଲୁଗୁ ବ୍ରଜନାଥଙ୍କ କୃତ 'ମନୋଦୂତ' ଖ୍ରୀ: ୧୬୫ ଅ: ରେ ରଚିତ ହୋଇଥିବା (କୁରୁସଭାତଳେ ଦ୍ରୌପଦୀଙ୍କର ଶ୍ରୀକୃଷ୍ଣଙ୍କ ନିକଟକୁ ମନୋଦୂତ ଦ୍ୱାରା ଜଣାଣ) ଜାଣି ଏହାର କବି ବ୍ରଜନାଥ ବଡଜେନା ବୋଲି ସନ୍ଦେହ କରି ସେ ସଂପର୍କରେ ଅନୁସନ୍ଧାନ ଚଳାଇଥିଲେ । ବ୍ରଜନାଥଙ୍କ ସମୟ ୧୭୩୦—୧୮୦୦ ଖ୍ରୀ: ଅ: ସ୍ଥିର ହୋଇଥିବାରୁ ଓ ଏହି କବିଙ୍କ ଦ୍ୱାରା ଭାଗବତ ୮ମ ଓ ୯ମ ସ୍କନ୍ଧର ଉପାଖ୍ୟାନମାନଙ୍କର ସୁନ୍ଦର ସୁନ୍ଦର ଚିତ୍ର ଆନ୍ଧ୍ରପ୍ରଦେଶର ଶ୍ରୀକାକୁଲମ୍ ତାଲୁକାର ଭିଲିଙ୍ଗ ଗ୍ରାମ ପରଶୁରାମ ପାତ୍ରଙ୍କ ନିକଟରେ ଉତ୍କର୍ଷ ଶରତଚନ୍ଦ୍ର ବେହେରା ଦେଖିଥିବା ପ୍ରମାଣ ପାଇ ସୁଧାକରବାବୁ ଏହି ପ୍ରକାର ସନ୍ଦେହ ପୋଷଣ କରିଥିଲେ । ଏହି ଗ୍ରନ୍ଥ ଅଦ୍ୟାବଧି ପ୍ରାପ୍ତ ନ ହେବାରୁ ସୁଧାକରବାବୁଙ୍କ ପରିଶ୍ରମ ଶେଷ ହୋଇ ପାରିଲନାହିଁ ।

'ଉତ୍କଳ ସାହିତ୍ୟ ସମାଜ' ଲାଇବ୍ରେରୀରେ ଥିବା 'ଉତ୍କଳପ୍ରଭା'ର ୧ମ ଭାଗ ୧୨ଶ ସଂଖ୍ୟାରେ 'ଚକଡ଼ା ପୋଥି' ଅସମ୍ପୂର୍ଣ୍ଣ ଭାବରେ ପ୍ରକାଶିତ ହୋଇଥିଲା । ତାହାର ପୂର୍ଣ୍ଣାଙ୍ଗ ପ୍ରକାଶ ନିମନ୍ତେ ସୁଧାକର ବାବୁ 'ଉତ୍କଳ ପ୍ରଭା'ର ସଂପାଦକ ମୟୂରଭଞ୍ଜର ଶ୍ରୀ ରାଜେଶ୍ୱର ମହା-ପାତ୍ରଙ୍କ ଗୃହ ଓ ଅନ୍ୟାନ୍ୟ ସ୍ଥାନରେ ଅବଶିଷ୍ଟାଂଶ ପ୍ରାପ୍ତି ପାଇଁ ଅନୁସନ୍ଧାନ ଚଳାଇଥିଲେ ହେଁ ସଫଳ ହୋଇପାରି ନ ଥିଲେ । ମାତ୍ର ୧୯୩୨ ବେଳକୁ ବାଣପୁର ଅବସ୍ଥାନ କାଳରେ ପୋଥି ମାଲିକ ଦେଓ୍ୱାନ କୃଷ୍ଣଚନ୍ଦ୍ରଙ୍କ ଗୃହ ଆଦି ସମ୍ଭାବ୍ୟ ସ୍ଥାନମାନ ଖୋଜି ଶେଷକୁ ତାହାର ପ୍ରକାଶ କରିଥିଲେ । ଏହାର ପ୍ରକାଶ ଦ୍ୱାରା 'ଚତୁର ବିନୋଦ'ର ପରବର୍ତ୍ତୀ କାଳରେ-୧୮ଶ ଶତାବ୍ଦୀର ଶେଷ ଓ ୧୯ଶ ଶତାବ୍ଦୀର ପ୍ରଥମଭାଗର ଏକ ଗଦ୍ୟଲେଖା ଉତ୍କଳୀୟ ପାଠକ ସମାଜର ହସ୍ତଗତ ହେଲା ।

'ଚକଡ଼ା ବସାଣ' ବା 'ଚମ୍ପୁମ ଚକଡ଼ା' ନାମରେ ଆଜି ଏକ ପୋଥି ମଧ୍ୟ ସେ ପ୍ରକାଶ କରିଥିଲେ ।

ବାଣପୁରରେ ଉଦଣିର ସ୍ୱଳ୍ପବର୍ଷ ପରେ ୧୯୩୬ରେ ଓଡ଼ିଶା ନୂତନ ପ୍ରଦେଶ ହେଲା । ସେତେବେଳେ ତାଙ୍କର ପୂର୍ବ ଅଫିସର ମାନ୍ସ୍‌ଫିଲ୍‌ଡ ସାହେବ ଚିଫ୍ ସେକ୍ରେଟେରୀ ଭାବରେ ନିଯୁକ୍ତି ପାଇ ପୁରୀରେ ଅବସ୍ଥାନ କରୁଥାନ୍ତି । ପୁରୀଠାରେ ତାଙ୍କ ସଙ୍ଗେ ଦେଖାହେଲା । ମାତ୍ର ବାଣପୁରରେ ପହଞ୍ଚି ସେ ଦେଖନ୍ତି ତ ତାଙ୍କ ନାମରେ ଚିଫ୍ ସେକ୍ରେଟେରୀଙ୍କଠାରୁ ପ୍ରେରିତ ଏକ D. O. ପତ୍ର । ତହିଁରେ ଲେଖାଥିଲା—

My dear Patnaik,

I was gla d to see you here the other day. you know we are controlling a new provinee. I have selected you for a station in this province ( Dist. Koraput ). I hope you should not mind it and should quickly proceed to join your new appointment.

ଚିଫ୍ ସେକ୍ରେଟେରୀ ମାନ୍ସଫିଲଡ଼ ସାହେବଙ୍କ ଏହି ପତ୍ରରୁ ତାଙ୍କର ସୁଧାକର ବାବୁଙ୍କ କର୍ମଦକ୍ଷତା ଉପରେ ଥିବା ଗଭୀର ଆସ୍ଥା ସୂଚିତ ହୁଏ ।

ସୁଧାକର ବାବୁଙ୍କୁ ନୂତ ସ୍ଥାନକୁ ପ୍ରେରଣା କରି ମାନ୍ସଫିଲ୍‌ଡ଼ ନିରସ୍ତ ନ ଥିଲେ, ବରଂ ତାଙ୍କର ସେଠାରେ ପହଞ୍ଚିବା ବେଳକୁ ଚିଫ୍ ସେକ୍ରେଟେରୀ ନିଜେ ମଧ୍ୟ ସେଠାକୁ ମସ୍ତରେ ଯାଇ ତାଙ୍କୁ ପ୍ରଶାସନିକ ସୂଚନାମାନ ପ୍ରଦାନ କରିଥିଲେ । କୋରାପୁଟ ଜିଲ୍ଲାରେ ଯୋଗଦେଇ ତାଙ୍କୁ ନବରଙ୍ଗପୁର, ଗୁଣୁପୁର ଓ ଗୁଡ଼ାରି ଆଦି ସ୍ଥାନରେ କାର୍ଯ୍ୟକରିବାକୁ ହୋଇଥିଲା ।

ଗୁଣପୁରଠାରେ ଅବସ୍ଥାନ କାଳରେ ବିହାର ଓଡ଼ିଶା ରିସର୍ଚ୍ଚ ସୋସାଇଟି ମାଗାଜିନ୍‌ରେ ସୁନ୍ଦର ସୁବର୍ଣ୍ଣରେ ଆବଦ୍ଧ ଏକ ଓଡ଼ିଆ ଭାଷାର ତମ୍ବାପଟା କୋରାପୁଟ ଅଞ୍ଚଳରୁ ପ୍ରଦତ୍ତ ହୋଇଥିବା ଅବଗତ ହୋଇ ସେ ସଂପର୍କରେ ମଧ୍ୟ ବହୁ ଅନୁସନ୍ଧାନ ଚଳାଇଥିଲେ । ତାହା ୧୮୦୭ ସାଲରେ ନବରଙ୍ଗପୁର ରାଜାଙ୍କ ପ୍ରଦତ୍ତ ବୋଲି ଜଣାପଡ଼ିଲା ।

ଏଥିପୂର୍ବରୁ ଶୋଭନେଶ୍ୱର ଶିବ ମନ୍ଦିରର ପ୍ରସିଦ୍ଧ ଶିଳାଲେଖ ପାଠକରି ସେ ପତ୍ରପତ୍ରିକାରେ ପ୍ରକାଶ କରିଥିଲେ । ଜୟପୁର ଅଞ୍ଚଳରେ ଗସ୍ତ କରିବା ସମୟରେ ଏକ ଦେବାଳୟ ପ୍ରତି ତାଙ୍କର ଦୃଷ୍ଟି ଆକୃଷ୍ଟ ହେଲା । ଏ ମନ୍ଦିରଟି ବିଶେଷ ବୃହତ୍ ବା ଆଡ଼ମ୍ବରପୂର୍ଣ୍ଣ ନ ଥିଲେ ହେଁ ସେଠାରେ ଏକ ସୁଦୁର୍ଲଭ ଦୃଶ୍ୟ ଥିଲା । ଯେହେତୁ 'ଗୁପ୍ତେଶ୍ୱର' ମନ୍ଦିରରେ କୌଣସି ଦେବ ପ୍ରତିମା ନ ଥିଲେ । ବରଂ ମନ୍ଦିର ମଧ୍ୟରେ ଶୀର୍ଷରୁ ପ୍ରବାହିତ ଏକ ସରୁ ଜଳଧାର ସରଳଭାବରେ ତଳଆଡ଼କୁ ଗଡ଼ିଆସୁଥିଲା ଓ ମନ୍ଦିରର ତଳଆଡ଼ୁ ଉପର ଆଡ଼କୁ ଗୋଟିଏ ଧାର ବହୁଥିଲା । ଏପରି ଏକ ବିଚିତ୍ର ସ୍ଥାନର ସେ ସନ୍ଧାନ କରିଥିଲେ ।

କୋରାପୁଟ ଜିଲ୍ଲାରୁ ବଦଳି ହୋଇ ଜେନାଲ୍ ରେଭିନ୍ୟୁ ତଥା ଲ୍ୟାଣ୍ଡ୍ ଆକ୍ୟୁଜିସନ୍ ଅଫସର ଭାବେ କଟକ ଆସିଲେ । କଟକ ସଦର ଏସ୍. ଡ଼ି. ଓ ଭାବେ ଅଳ୍ପକାଳ ରହିବା ପରେ ଯାଜପୁର ଏସ୍.ଡ଼ି.ଓ ରୂପେ ଅବସ୍ଥାପିତ ହେଲେ । ଏହି ସମୟରେ ଗାନ୍ଧୀଜୀଙ୍କ ହତ୍ୟା ସମ୍ବାଦ ଅବଗତ ହୋଇ ସେ ଅତ୍ୟନ୍ତ ବ୍ୟଥିତ ହୋଇଥିଲେ । ଏହା ପରେ ଦେବୋତ୍ତର କମିଶନର ଭାବରେ କିଛିକାଳ କାର୍ଯ୍ୟକରି ସରକାରୀ କର୍ମରୁ ଅବ୍ୟାହତି ନେଲେ ।

ସରକାରୀ କର୍ମରୁ ଅବସର ନେବାପରେ ତାଙ୍କର ସମସ୍ତ ସମୟ ସାହିତ୍ୟସେବା ଓ ପ୍ରତ୍ନତାତ୍ତ୍ୱିକ ଗବେଷଣା ତଥା ପୁସ୍ତକ ପ୍ରକାଶ ଆଦିରେ ବ୍ୟୟିତ ହେଲା । କଟକଠାରେ ପଞ୍ଚନାୟକ ପ୍ରେସ୍ ସ୍ଥାପନକରି

ବିଭିନ୍ନ ପୁସ୍ତକ ସଂକଳନ ଓ ସଂପାଦନା କର୍ମରେ ବ୍ୟାପୃତ ଥିଲେ । ଅନୁଗୋଳର ଶେଷରାଜା ସୋମନାଥ ସିଂହ ଜଗଦେବଙ୍କ ସଂପର୍କରେ ବ୍ରିଟିଶ ଅଫିସରମାନେ ଯେଉଁଭଳି ନିନ୍ଦାସୂଚକ ବିବରଣୀ ଦେଇଥିଲେ ସେ ସବୁର ଖଣ୍ଡନକରି ପ୍ରକୃତ ତଥ୍ୟ ପରିବେଷଣ କରି ଏକ ସ୍ୱତନ୍ତ୍ର ପୁସ୍ତକ ପ୍ରକାଶ କଲେ । ତାହାଙ୍କ ସଂପାଦିତ ବ୍ରଜନାଥ ଗ୍ରନ୍ଥାବଳୀ ଓଡ଼ିଶା ସାହିତ୍ୟ ଏକାଡେମି ପକ୍ଷରୁ ପ୍ରକାଶିତ ହେଲା । ଉତ୍କଳଦୀପିକା ଆଦି ପୁରାତନ ପତ୍ରପତ୍ରିକାରୁ ସଂଗ୍ରହକରି ଊନବିଂଶ ଶତକର ଓଡ଼ିଶାର ସାଂସ୍କୃତିକ ତଥ୍ୟ ସଂକଳିତ 'ସମ୍ବାଦପତ୍ରରୁ ଓଡ଼ିଶାର କଥା' ପ୍ରଥମଭାଗ ପ୍ରକାଶକଲେ । ଏହି ଗ୍ରନ୍ଥର ଦ୍ୱିତୀୟ ଭାଗଶେଷ ହୋଇ ଏବେ ସେ ତୃତୀୟ ଭାଗ ନିମିତ୍ତ ତଥ୍ୟାଦି ସଂଗ୍ରହ କରିବାରେ ବ୍ୟସ୍ତ ।

'ଓଡ଼ିଶା ହିଷ୍ଟୋରିକାଲ୍ ରିସର୍ଚ୍ଚ ଜର୍ଣ୍ଣାଲ୍' ସହିତ ସଂପୃକ୍ତ ଥାଇ କେତେକ ଐତିହାସିକ ଓ ପତ୍ନତାତ୍ତ୍ୱିକ ପ୍ରବନ୍ଧ ମଧ୍ୟ ଲେଖିଛନ୍ତି । ବିଶେଷ 'ଓଡ଼ିଶାର ବୋମ୍ବାଳ କରଣ' ପ୍ରବନ୍ଧରେ ଓଡ଼ିଶାର ଏହି ସମ୍ପ୍ରଦାୟ ଆନ୍ଧ୍ର ସଂସ୍କୃତି ସହିତ କିପରି ଜଡିତ ହୋଇପଡ଼ିଛନ୍ତି, ତାର ସୂଚନା ସେ ଦେଇଥିଲେ ।

'ଝଙ୍କାର' ସାହିତ୍ୟ ପତ୍ର ସହିତ ସେ ମଧ୍ୟ ଘନିଷ୍ଠଭାବେ ସଂପୃକ୍ତ । 'ଖୋର୍ଦ୍ଧା ପାଇକ ମେଳି ସମ୍ବନ୍ଧରେ ନୂତନ ତଥ୍ୟ (ଝଙ୍କାର ୪ର୍ଥ ବର୍ଷ ୧ମ ସଂଖ୍ୟା) ଖୋର୍ଦ୍ଧା ଭୋଇବଂଶର ଉତ୍ପତ୍ତି (ଝଙ୍କାର ୪ର୍ଥ ବର୍ଷ ଦ୍ୱିତୀୟ ସଂଖ୍ୟା), ଠାକୁର ରାଜା ଅବ୍ୟସିଂହ ଦେବ (ଝଙ୍କାର ୫ମ ବର୍ଷ ୧ମ ସଂଖ୍ୟା), ଚୂଡ଼ଙ୍ଗଗଡ଼ (ଝଙ୍କାର ୧୬ଶ ବର୍ଷ ୧ମ ସଂଖ୍ୟା) ଆଦି ବହୁ ମୂଲ୍ୟବାନ ତଥ୍ୟ ସମ୍ବଳିତ ପ୍ରବନ୍ଧମାନ ପ୍ରକାଶ କରିଥିଲେ । ଏତଦ୍‌ବ୍ୟତୀତ ତାଙ୍କର 'ଏପ୍ରିଲ୍ ଫୁଲ୍', ଓ 'ପ୍ରଣୟ ସ୍ମୃତି' ନାମରେ ଦୁଇଟି କ୍ଷୁଦ୍ରଗଳ୍ପ ମଧ୍ୟ ପ୍ରକାଶିତ । ଢେଙ୍କାନାଳର ଗୋଟିଏ ପ୍ରାଚୀନ ଅଞ୍ଚଳରେ ଥିବା ଭଗ୍ନ ଶିବ ମନ୍ଦିର ଓ ଦ୍ୱାଦଶଭୂଜା ଦେବୀ ମୂର୍ତ୍ତି ନାମରେ ଏକ ପ୍ରବନ୍ଧ ମଧ୍ୟ ପ୍ରକାଶ କରିଥିଲେ ।

ଏହିପରି ବହୁ ସାହିତ୍ୟିକ ଓ ଐତିହାସିକ ପ୍ରବନ୍ଧ ପ୍ରକାଶ କରି ଆପଣାର ଗବେଷଣାତ୍ମକ ମେଧାର ପରିଚୟ ଦେଇଛନ୍ତି । ନବେ ବର୍ଷ ବୟସ୍କ ହେଲେ ବି ତାଙ୍କର ନିୟମିତ ଜୀବନ ଯାପନ ପ୍ରଣାଳୀ ଯୋଗୁଁ ସେ ମାନସିକ ସ୍ୱଚ୍ଛତା ଅନୁଭବ କରିବା ସଙ୍ଗେ ସଙ୍ଗେ ଉତ୍କଳର ସାରସ୍ୱତ ଭଣ୍ଡାରର ପୁଷ୍ଟି କରିବାରେ ପ୍ରୟାସୀ ଅଛନ୍ତି । ଏହି ଜ୍ଞାନତପସ୍ୱୀ ସୁଧାସନ୍ଧାନୀ ସୁଧାକର ପଟ୍ଟନାୟକଙ୍କୁ ସମ୍ବର୍ଦ୍ଧିତ କରି ଆଜି ଉତ୍କଳ ପାଠକ ସଂସଦ ଆପଣାକୁ ଗୌରବାନ୍ୱିତ ମଣୁଛି ।



# ପୋଥି-ପଥରନାଥ କେଦାରନାଥ

ଶ୍ରୀସୂର୍ଯ୍ୟନାରାୟଣ ଦାସ ଏମ୍. ଏ, ଓ. ଏଫ୍. ଏସ୍.

"ପୋଥିଗୁଡ଼ିକ ବହୁଯତ୍ନରେ ରକ୍ଷିତ ହେଲେ ମଧ୍ୟ ଜଳବାୟୁର ପ୍ରଭାବରୁ ତିନି ଚାରି ଶହ ବର୍ଷ ମଧ୍ୟରେ ଜୀର୍ଣ୍ଣ, କୀଟଦଂଷ୍ଟ ଓ ଭଙ୍ଗପ୍ରବଣ ହୋଇଥିବାର ଦେଖାଯାଏ । ପ୍ରାୟ ଚାରିପାଞ୍ଚ ବର୍ଷର ବ୍ୟବଧାନରେ ଘଟୁଥିବା ପ୍ରବଳ ବନ୍ୟା, ବାତ୍ୟା ଓ ବହୁଜଳବୃଷ୍ଟି ପ୍ରଭୃତି ଦୈବୀ ବିପତ୍ତି ସେଗୁଡ଼ିକର ପରମାୟୁ କ୍ଷୟରେ ସାହାଯ୍ୟ କରୁଛି । ...ତେଣୁ ପ୍ରାଚୀନ ଉତ୍କଳର ପରମ୍ପରା ସମ୍ପର୍କରେ ଜ୍ଞାନ ଆହରଣ ପାଇଁ ତିନିଶତ ବର୍ଷ ପରମାୟୁ ଥିବା ତାଳପତ୍ର ପୋଥି ଉପରେ ବର୍ତ୍ତମାନ ନିର୍ଭର କରିବାକୁ ପଡ଼ିବ ।"

( ଶ୍ରୀ ଜୟଦେବ ଓ ଶ୍ରୀ ଗୀତଗୋବିନ୍ଦ—ପୃ-୨୮୧)

ବହୁ ପ୍ରାଚୀନ ପୋଥିର ସୁସଂପାଦକ, ନାନା ଅଜ୍ଞାତ ତଥ୍ୟର ଉଦ୍ଧାରକର୍ତ୍ତା, ସଂସ୍କୃତ ସାହିତ୍ୟର ସାଧନାନିଷ୍ଠ ଗବେଷକ କେଦାର-ନାଥଙ୍କୁ ସ୍ୱର୍ଗତ ଡକ୍ଟର ମାନସିଂହ 'ପୋଥିନାଥ' ନାମରେ ଅଭିହିତ କରିଥିଲେ ହେଁ, ସେ କେବଳ 'ପୋଥିନାଥ' ନୁହଁନ୍ତି; 'ପଥରନାଥ' ମଧ୍ୟ । ତାଙ୍କର ଜାତକ ଗଣନାକରି ବାଙ୍କୀର ଜଣେ ଜ୍ୟୋତିଷୀ ତାଙ୍କ ବାପାଙ୍କୁ କହିଲେ ଯେ କେଦାର ଲକ୍ଷେ ପଥର-କାମ କରିବ । ସେହି ଲକ୍ଷ୍ୟରେ ପ୍ରଧାବିତ ହୋଇ ସେ ଆଜି ସାଧନାପୀଠର ଶୀର୍ଷଦେଶରେ ଦଣ୍ଡାୟମାନ; ସ୍ୱନାମଧନ୍ୟ ପ୍ରତ୍ନତତ୍ତ୍ୱବିଦ୍ ଭାବରେ ତାଙ୍କର ପ୍ରତିଷ୍ଠା ଅପ୍ରତିହନ୍ଦୀ ।

ବେଗଲର୍‌ର ସାହେବଙ୍କ ଠାରୁ 'ବେଲଖଣ୍ଡି ସାହେବ'ଙ୍କ ପର୍ଯ୍ୟନ୍ତ—୭୦ବର୍ଷର ବ୍ୟବଧାନ, ଆଉ, ତାପରେ ··· ପ୍ରାଚୀନ

ସପ୍ତମାତୃକା ପୀଠର ଆବିଷ୍କାର ! ଏହା କେବଳ ଏକ ଅସାମାନ୍ୟ ଐତିହାସିକ ଘଟଣା ନୁହେଁ, ଗୋଟାଏ ଅଲୌକିକ ଦିବ୍ୟ ଅନୁଭୂତି ମଧ୍ୟ !

## ଲାସ୍ୟନୃତ୍ୟରତା ଲାବଣ୍ୟମୟୀ ମାତୃମୂର୍ତ୍ତି :

୧୯୯୬ ମସିହାର ଜ୍ୟଷ୍ଠ ଉତ୍ତପ୍ତ ଏକ ନିଦାଘ ରଜନୀ । ତେଲ ଓ ଉତେଇ ନଦୀର ସଙ୍ଗମ ସ୍ଥଳ । କଣ୍ଟକବର୍ତ୍ତୀ ଘନବନଗିରି ମଧ୍ୟସ୍ଥ ରାଜ-ଶିବିରରେ ରହି ଆଗାମୀ ପ୍ରତ୍ୟୁଷରୁ ଭୂଖୋଦନ ଲାଗି ପ୍ରାକ୍‌ପ୍ରସ୍ତୁତି କରୁଥିଲେ ପ୍ରତ୍ନତତ୍ତ୍ୱବିଦ୍ 'ବେଲ୍‌ଖଣ୍ଡି ସାହେବ' । ଏହି ସ୍ଥାନ ବହୁ ପ୍ରାଚୀନ ଧ୍ୱଂସାବଶେଷ ପରିପୂର୍ଣ୍ଣ ବୋଲି ଦୀର୍ଘ ୭୦ ବର୍ଷ ତଳେ ଏଠାକୁ ଅନୁସନ୍ଧାନରେ ଆସିଥିବା ପ୍ରତ୍ନତତ୍ତ୍ୱବିଦ୍ ବେଗଲାଇ ସାହେବ ମତବ୍ୟକ୍ତ କରିଥିଲେ । ପରେ ଓଡ଼ିଶାର ଅନ୍ୟତମ ଖ୍ୟାତନାମା ପ୍ରତ୍ନତତ୍ତ୍ୱବିଦ ସ୍ୱର୍ଗତ ପରମାନନ୍ଦ ଆଚାର୍ଯ୍ୟ ମଧ୍ୟ ଅନୁରୂପ ମତ ଦେଇଥିଲେ । କିନ୍ତୁ କଳାହାଣ୍ଡି ରାଜାଙ୍କ ଦେୱାନ ସେସବୁ କଥାରେ ଆଦୌ ବିଶ୍ୱାସ କରୁ ନ ଥିଲେ । ଶେଷକୁ ବହୁତ ବୁଝାଶୁଝା କରି 'ବେଲ୍‌ଖଣ୍ଡି ସାହେବ' ରାଜାଙ୍କୁ ରାଜି କରାଇଲେ ଏବଂ ସେ ଖୋଦନ କାର୍ଯ୍ୟ ଲାଗି ଦୁଇଶହ ଟଙ୍କା ମଞ୍ଜୁର କଲେ । ପ୍ରତ୍ୟୁଷରୁ ଖୋଦନ କାର୍ଯ୍ୟ ଆରମ୍ଭ ହେବ ବୋଲି ସ୍ଥିର ହେଲା ।

ରାତି ପ୍ରାୟ ଦୁଇଟା । ଶିବିର ବାହାରେ ହଠାତ୍ ଶୁଣାଗଲା ଘୁଙ୍ଗୁରସ୍ୱନ । ଆସ୍ତେ ଆସ୍ତେ ସେହି ଶବ୍ଦ ଅତି ପାଖରୁ ଶୁଣିବାକୁ ମିଳିଲା । ଛନ୍ଦାୟିତ ନୃତ୍ୟର ମନୋହାରିଣୀ ଧ୍ୱନି ।

—"ବେଲଖଣ୍ଡି ସାହେବ ! ବେଲଖଣ୍ଡି ସାହେବ !" ଭାବ ଗଦ୍ ଗଦ୍ ସ୍ୱରରେ ତାଙ୍କୁ ଶିବିର ବାହାରକୁ ଡାକନେଇ ଯାଇଥିଲା ଜଣେ ଆଦିବାସୀ କୁଲିଆ । ସେଠାରେ ସେ ଯାହା ଦେଖିଥିଲେ, ବାସ୍ତବିକ୍ ତାହା ବର୍ଣ୍ଣନାତୀତ । ଜଣେ ଅପରୂପା ସୁନ୍ଦରୀ ତରୁଣୀ ନୃତ୍ୟରତା ! ଅପୂର୍ବ ସେ ଛନ୍ଦମୟୀ, ଲାସ୍ୟମୟୀ ନାରୀମୂର୍ତ୍ତି !

ସେଇ ମୂଲିଆ ଜଣକ କହିଲା—"ବାବୁ, ମା ମାଟିତଳେ ଥିଲା ! ତମେ ତାଙ୍କୁ ଭୂଇଁ ଖୋଳ ଦେବ ନା, ସେ ଆଜ ବାହାରକୁ ଉଠି ଆସିଲା—ଆନନ୍ଦରେ ନାଚୁଛି ।"

ସତକୁ ସତ ଅଳ୍ପ କେତୋଟି ମୁହୂର୍ତ୍ତ ମଧ୍ୟରେ ଅଦୃଶ୍ୟ ହୋଇ ଯାଇଥିଲା ସେହି ନାଗମୂର୍ତ୍ତି । ଆଉ ସକାଳୁ ଖୋଦନ କାର୍ଯ୍ୟ ଆରମ୍ଭ କଲାବେଳକୁ କେହି ସେଥିଲାଗି ରାଜି ହୋଇ ନ ଥିଲେ । ସେମାନେ କହୁଥିଲେ—"ମାଁ ଆମକୁ ଖାଇଯିବ, ସେ ଭୂଇଁତଳେ ଅଛି । ଆମେ ଖୋଳିବୁ ନାହିଁ ।" ଶେଷକୁ ସ୍ୱୟଂ 'ବେଲଖଣ୍ଡି ସାହେବ' ନିଜେ ଶାବଳ ଧରି ଖୋଳିବା ଆରମ୍ଭ କଲେ । ଅଳ୍ପ ସମୟ ମଧ୍ୟରେ ବହିର୍ଗତ ହେଲା ଅବ୍ୟୟବଉ ତ୍ରିମୂର୍ତ୍ତି—ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱରଙ୍କ ମୂର୍ତ୍ତି । ତାପରେ ଲୋକେ ଆନନ୍ଦରେ ନାଚି ଉଠିଲେ । ଭୋଗରାଗ ଧରି ଆଖ ପାଖରୁ ଛୁଟି ଆସିଲା ଜନସ୍ରୋତ । ଘଣ୍ଟାବାଦ୍ୟ ଶଙ୍ଖ ତାଳ ମର୍ଦ୍ଦଳ ଧ୍ୱନିରେ ମୁଖରିତ ହୋଇ ଉଠିଲା ବେଲଖଣ୍ଡି ରାଜ ପଦର । ସେମାନେ "ବେଲଖଣ୍ଡି ସାହେବ ଆମର ଅମର" କହି ତାଙ୍କ ଉପରେ ଅଜାଡ଼ି ଦେଇଥିଲେ ଅଗାଧ ସ୍ନେହ ସମ୍ମାନ—ସୁରଭିତ ପୁଷ୍ପଗୁଚ୍ଛର ଅନ୍ତରାଳରେ ! ପରେ ସମସ୍ତେ ଖୋଦନ କାର୍ଯ୍ୟରେ ଲାଗି ଯାଇଥିଲେ । ଆବିଷ୍କୃତ ହୋଇଥିଲା ବିଖ୍ୟାତ ସପ୍ତମାତୃକା ମନ୍ଦିର !

ଏଇ ବେଲଖଣ୍ଡି ସାହେବ ଜଣକ ଅନ୍ୟକେହି ନୁହନ୍ତି—ଆମର ପ୍ରିୟ ପ୍ରତ୍ନତତ୍ତ୍ୱବିଦ୍ ସ୍ୱୟଂ କେଦାରନାଥ ମହାପାତ୍ର, ତଦାନୀନ୍ତନ କଳାହାଣ୍ଡି ରାଜ୍ୟର ପ୍ରତ୍ନତତ୍ତ୍ୱବିଭାଗର ଅଧ୍ୟକ୍ଷ ।

## ପରମ୍ପରାର ପ୍ରଭାବ :

ପିଲାଦିନୁ ସେ ବୁଦ୍ଧିଆ । ତାଙ୍କର ସ୍ମରଣ ଶକ୍ତି ଅତି ପ୍ରଖର । ଶୈବପୀଠ ଏକାମ୍ରକ୍ଷେତ୍ର ଭୁବନେଶ୍ୱରଠାରେ ତାଙ୍କର ଆବିର୍ଭାବ—୧୮୩୩ ଶକାବ୍ଦ କାର୍ତ୍ତିକ ମାସ କୃଷ୍ଣ ଚତୁର୍ଦ୍ଦଶୀ ଶନିବାର (୧୯୧୧ ମସିହା ଅକ୍ଟୋବର ମାସ ୨୧ ତାରିଖ) ଦିନ । ୧୯୨୧ରୁ ୧୯୨୫ ଯାଏ ଭୁବନେଶ୍ୱର ମାଇନର ସ୍କୁଲରେ ପଢ଼ିବା ପରେ ଖୋର୍ଦ୍ଧା ହାଇସ୍କୁଲରୁ

ସେ ମାଟ୍ରିକ ପରୀକ୍ଷା ଦେଇଥିଲେ । ୧୯୩୩ ମସିହାରେ ସେ ରେଭେନ୍‌ସା କଲେଜରୁ ସ୍ନାତକ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ । ସେତେବେଳେ ସେ ଭୁବନେଶ୍ୱରର ପ୍ରଥମ ସ୍ନାତକ !

ତଥାପି, ଈଶ୍ୱରେଚ୍ଛା ନିରଙ୍କୁଶ । ପାଟନା କଲେଜରେ ସ୍ଥାନ ପାଇ ସୁଦ୍ଧା ଅସୁସ୍ଥତା କାରଣରୁ ସେ ଏମ୍. ଏ. ଶ୍ରେଣୀରେ ଯୋଗଦେଇ ପାରିନଥିଲେ । ଟ୍ରେନିଂ କଲେଜରେ ରହିଥିଲେ ମାତ୍ର ଗୋଟିଏ ବର୍ଷ । (୧୯୩୪-୩୫) ବାଳପୁରର ଅନନ୍ତ ମାଷ୍ଟ୍ରେ, ଯାହାଙ୍କର ଆଦର୍ଶ ଶିକ୍ଷାଗୁରୁ, ବଡେଇ ସାହିର ବୈରାଗୀ ମହାରଣାଙ୍କଠୁଁ ଯିଏ ଶିଳ୍ପଶାସ୍ତ୍ର ସମ୍ବନ୍ଧରେ ଟିକିନିଖି ଜ୍ଞାନ ଆହରଣ କରିଥିଲେ, ଦଦେଇ (କବିରାଜ ବାଞ୍ଛାନିଧି ମହାପାତ୍ର) ଙ୍କର ସଂସ୍କୃତ ଶ୍ଳୋକାବୃତ୍ତିର କମନୀୟ ସ୍ୱର-ମାଧୁରୀରେ ଯିଏ ଆମୂଳଷ୍ପୃଷ୍ଟ ହୋଇପଡୁଥିଲେ, ସେଇ କେଦାରନାଥ ଜଣେ ଏକନିଷ୍ଠ ସଂସ୍କୃତ ଗବେଷକ ଓ ନିରବଚ୍ଛିନ୍ନ ପ୍ରତ୍ନତତ୍ତ୍ୱାନୁସନ୍ଧାନୀ ନ ହୋଇ ଆଉ କଣ ହୋଇ ପାରନ୍ତେ !

ପୁଣି, ଏକାମ୍ରକ୍ଷେତ୍ରାଧିପତି ଲିଙ୍ଗରାଜଙ୍କର ବୈଦ୍ୟ ପରିବାରର ପୁତ୍ର ସେ । ଏବେ ବି ତାଙ୍କ ଘରୁ ଲିଙ୍ଗରାଜଙ୍କର ସେବନ ଲାଗି ମୋଦକ ପଠାଯାଉଛି । ତାଙ୍କ ଘରେ ପ୍ରତ୍ୟହ ପୂଜା ପାଉଛନ୍ତି ଇଷ୍ଟଦେବୀ ଭୁବନେଶ୍ୱରୀ । ଶ୍ରୀଶକ୍ତି ଉପରେ ଅଖଣ୍ଡ ବିଶ୍ୱାସ ତାଙ୍କର । ଆଜି, ସେ ନିଜେ କହନ୍ତି ଯେ, ଏହା ମୂଳରେ ତାଙ୍କ ଦଦେଇଙ୍କର ପ୍ରେରଣା ସନ୍ନିହିତ ।

## ରକ୍ଷଣଶୀଳତା ବି ମୃତ୍ୟୁର କାରଣ :

୧୯୫୩ ମସିହାର ଏକ ଆଶ୍ୱିନ ଅପରାହ୍ନ । ସେଦିନ ଭୁବନେଶ୍ୱର ଆକାଶରେ ଅଦିନିଆ ମେଘ ଘୋଟିଥିଲା । ପ୍ରବଳ ବର୍ଷା ସାଙ୍ଗକୁ ପ୍ରଚଣ୍ଡ ଝଡ଼ତୋଫାନ ବହିବା ଫଳରେ ସାଧାରଣ ଜୀବନଯାତ୍ରା ବ୍ୟାହତ ହୋଇପଡ଼ିଥିଲା । ତଥାପି କର୍ତ୍ତବ୍ୟରତ ବାଞ୍ଛାନିଧି ମହାପାତ୍ରେ ଜମି ଦେଖିବାକୁ ଯାଇଥିଲେ । ସେଦିନ ଜମିରେ ବୃଷ କଚ୍ଛକରୁ ଲିଙ୍ଗଲମ୍ବନ ବାଜ ଗୋଟିଏ ପ୍ରସ୍ତର ମୂର୍ତ୍ତି ବାହାରିଲା । ସେହି ମୂର୍ତ୍ତିଟି ଥିଲା,

ବୁଦ୍ଧପୁରୀସ୍ଥ ଲୋକନାଥ ମୂର୍ତ୍ତି । ଲଙ୍ଗଳମୂଳ ବାଜ ଗର୍ଜିଯାଇଥିଲା । ସେତେବେଳକୁ ଝଡ଼ତୋଫାନ ପ୍ରବଳ ଆକାର ଧାରଣ କଲା । ଜମିରୁ ଫେରି ଆସିଲେ ମହାପାତ୍ରେ । ଆକାଶ ଅନ୍ଧକାରାଚ୍ଛନ୍ନ: ମୁହଁକୁ ମୁହଁ ଦିଶୁନି । ହଠାତ୍ ରାସ୍ତାରେ ଜଣକର ସାଇକେଲ ସହ ଧକ୍କା ଲାଗିଲା । ମୁହଁ ମାଡ଼ି ତଳେ ପଡ଼ିଗଲେ ସେ । ଚେତା ହଜିଗଲା । ସାଇକେଲ ଚଢ଼ାଳି ତା ନିଜ ରାସ୍ତାରେ ଚାଲିଯାଇଥିଲେ ।

ସେଇ ଅବସ୍ଥାରେ ସେଇ ବାଟରେ ଆସୁଥିବା ଜଣେ ବାଉରାଣୀ ମହାପାତ୍ରଙ୍କୁ ଉଠାଇଲା । ମୁହଁରେ ପାଣି ଛିଞ୍ଚିଲା । ସେ ସଞ୍ଜ୍ଞା ଫେରି ପାଇଲେ । ତଥାପି ମୁହଁ ଖୋଲୁ ନଥିଲା । ହାତଠାରି ପାଣି ମୁନ୍ଦାଏ ପିଇବାକୁ ଦେବାଲାଗି ସେ ଅନୁରୋଧ କରିଥିଲେ । କିନ୍ତୁ ବ୍ରାହ୍ମଣ କବିରାଜଙ୍କ ପାଟିରେ ବାଉରାଣୀ ପାଣି ଦେବ କିପରି ? ତାର କଣ ସବୁ ଧର୍ମ ଲୋପ କରିଦେବ ସେ ! ଅକ୍ଷମଣୀୟ ପାପର ଅଧିକାରିଣୀ ହେବ କାହିଁକି ?

ଏଭଳି ରକ୍ଷଣଶୀଳ ସଂସ୍କାରର ବଶବର୍ତ୍ତୀ ହୋଇ ବାଉରାଣୀ ଜଣକ ସେହି ସଙ୍କଟକାଳୀନ ମୁହୂର୍ତ୍ତରେ ମଧ୍ୟ ମହାପାତ୍ରଙ୍କୁ ପାଣି ଟୋପାଏ ଦେଇ ନଥିଲା । ଘରେ ଆସି ଖବର ଦେଲାବେଳକୁ କେଦାରନାଥ ତାଙ୍କ ଲେଖନଶାଳାରେ ବସି 'ଉତ୍କଳ ଓ ଆନ୍ଧ୍ର' ପ୍ରବନ୍ଧ ଲେଖୁଥିଲେ । ଦୁଃସମ୍ବାଦଟି ଶୁଣିବାକ୍ଷଣି ସେ ଦୌଡ଼ିଯାଇ ବଡ଼ବାପାଙ୍କୁ ଉଠାଇ ଆଣିଲେ । ବହୁବିଧ ଚିକିତ୍ସା ବ୍ୟବସ୍ଥା କରାଗଲା । ତଥାପି ତାଙ୍କର ମୁହଁ ଆଉ ଖୋଲିଲା ନାହିଁ । ବିଶେଷଜ୍ଞ ଡାକ୍ତର କହିଲେ— ସେ ବୁଡ଼ିବା ମୁହୂର୍ତ୍ତରେ ପାଣି ପିଇବାକୁ ଦେଇଥିଲେ ଏ ଅବସ୍ଥା ଉପୁଜି ନ ଥାନ୍ତା । ଏଇ ଘଟଣାର ତିନିଦିନ ପରେ କେଦାରବାବୁଙ୍କ ବଡ଼ବାପା ଇହଧାମରୁ ବିଦାୟ ନେଇଥିଲେ ।

## ସାଧନା ପଥର ନିଃସଙ୍ଗ ପଥିକ :

ତାଙ୍କ ବଡ଼ବାପାଙ୍କ ମୃତ୍ୟୁର ତିନିବର୍ଷ ପୂର୍ବରୁ (୧୯୫୦ ମଇ ପହିଲାରେ) ପିତାଙ୍କର ଦେହାନ୍ତ ଘଟିଲା ଏବଂ ବର୍ଷକ ପରେ (୧୯୫୬

ମସିହା ଏପ୍ରିଲ ମାସରେ) ମାତୃବିୟୋଗ ଶୋକ ପଡ଼ିଗଲା । କେଦାର ନାଥ ବର୍ତ୍ତମାନ ଅଭିଭାବକବିହୀନ । ସାଧନାର ସନ୍ଧାନ-ପଥରେ ସେ ନିଃସଙ୍ଗ, ନିଃସହାୟ । ଚଉଦ ବର୍ଷରେ ବାଲ୍ୟ ବିବାହ କରି ଊନେଇଶ ବର୍ଷରୁ (୧୯୩୦ ମଇ ମାସରେ) ଦାମ୍ପତ୍ୟଜୀବନରେ ଜଡ଼ିତ ହୋଇ [illegible] ପୁତ୍ର ଓ ଦୁଇଟି କନ୍ୟାର ଜନକ ହୋଇସାରିଥିଲେ ସେ; ତଥାପି ତାଙ୍କର ସାଧନାକ୍ଷେତ୍ରକୁ ପୁଷ୍ଟ କରିବା ଦିଗରେ ପରିବାର-ଜନଙ୍କର ଅବଦାନ ଉଲ୍ଲେଖନୀୟ ନଥିଲା । ଗବେଷଣାର ବନ୍ଧୁର ଗଡ଼ପଥକୁ ସରଳ କରିବାଲାଗି କେହି ଆଲୋକଦ୍ରଷ୍ଟା ନଥିଲେ । 'ଏକଲା ଚଲୋରେ' ଆଦର୍ଶକୁ ଜାବୁଡ଼ି ଧରି ସାଧନା ପଥର ନିଃସଙ୍ଗ ଯାତ୍ରୀ ସେ !

ସେତେବେଳକୁ ସାରସ୍ୱତପୀଠର ସେ ପ୍ରତିଷ୍ଠିତ ପୂଜାରୀ; ଗବେଷଣା କ୍ଷେତ୍ରରେ ବହୁଦୂର ଅଗ୍ରଗାମୀ; ଶତାଧିକ ପ୍ରବନ୍ଧର ପ୍ରଣେତା; ବହୁ ଐତିହାସିକ କୀର୍ତ୍ତିର ଆବିଷ୍କର୍ତ୍ତା; 'ଶ୍ରୀ ଖାରବେଳ' (୧୯୫୨) ଓ 'ତୋଷଳୀ (ଧଉଳି)ର ଇତିହାସ' (୧୯୫୬) ଭଳି ଐତିହାସିକ କୃତିର ଅଧିକାରୀ । ବିଭିନ୍ନ ପତ୍ରପତ୍ରିକା ପରିବାର, ବିଭିନ୍ନ ସାହିତ୍ୟାନୁଷ୍ଠାନ ଓ ରାଜ୍ୟ ସଂଗ୍ରହାଳୟରେ ତାଙ୍କର ସୁଖ୍ୟାତି ଓ ପ୍ରଶଂସା ବହୁମୁଖରେ ଉଦ୍‌ଘୋଷିତ ହେଉଥିଲା ।

## ନିରଳସ କର୍ମଜୀବନ :

୧୯୩୫ ମସିହାରେ କେଦାରନାଥଙ୍କ କର୍ମ ଜୀବନର ଶୁଭାରମ୍ଭ ହୋଇଥିଲା ଖୋର୍ଦ୍ଧା ହାଇସ୍କୁଲର ଶିକ୍ଷକ ଭାବରେ । କ୍ରମାନ୍ୱୟରେ କଟକ ଟାଉନ୍ ଭିକ୍ଟୋରିଆ ହାଇସ୍କୁଲ, ବାଙ୍କୀ-ଡମ୍ପଡ଼ା ହାଇସ୍କୁଲ, ପୁରୀ ଜିଲ୍ଲାସ୍କୁଲ, ସମ୍ବଲପୁର ଜିଲ୍ଲାସ୍କୁଲ ଓ ପ୍ୟାରିମୋହନ ଏକାଡ଼େମିରେ ଆଠ ବର୍ଷକାଳ ଶିକ୍ଷକତା କଲା ପରେ ତାଙ୍କର ଭାଗ୍ୟ ଅନ୍ୟ ଏକ ମୋଡ଼ ନେଇଥିଲା । କଳାହାଣ୍ଡିର ଦେୱାନ୍ ସ୍ୱର୍ଗତ ରାୟବାହାଦୁର ଉମାଚରଣ ଦାସଙ୍କ ପରାମର୍ଶ କ୍ରମେ ବିଦ୍ୟୋତ୍ସାହୀ ରାଜା ପ୍ରତାପକେଶରୀ ଦେଓ ତାଙ୍କ ରାଜ୍ୟରେ ଗୋଟାଏ ପ୍ରତ୍ନତତ୍ତ୍ୱ ବିଭାଗ ଖୋଲି ଶିକ୍ଷକ ଶ୍ରୀଯୁକ୍ତ ମହାପାତ୍ରଙ୍କୁ ସେଥିର ଅଧକ୍ଷ ରୂପେ ନିଯୁକ୍ତ କରିଥିଲେ— ନିଃସନ୍ଦିଗ୍ଧ ଚିତ୍ତରେ, ଅଯାଚିତ ଭାବରେ ।

୧୯୪୩ ମସିହା ନଭେମ୍ବର ମାସ ୧୬ ତାରିଖରୁ ୧୯୫୦ ମସିହା ମାର୍ଚ୍ଚ ମାସ ୩୧ ତାରିଖ ପର୍ଯ୍ୟନ୍ତ ଭବାନୀପାଟଣାରେ ଅବସ୍ଥାନ କାଳରେ ପ୍ରତ୍ନତାତ୍ତ୍ୱିକ ଭୂଖୋଦନ, ସଂଗ୍ରହାଳୟ ପ୍ରତିଷ୍ଠା, ପ୍ରାଚୀନ ପୋଥିପତ୍ରର ପରୀକ୍ଷା ନିରୀକ୍ଷା କ୍ଷେତ୍ରରେ ସେ ଯଥେଷ୍ଟ ଅଗ୍ରଗତି କରିବାର ସୁଯୋଗ ଲାଭ କରିଥିଲେ । ବେଲଖଣ୍ଡି (କଳାହାଣ୍ଡି)ର ସପ୍ତମାତୃକା ମନ୍ଦିରର ଆବିଷ୍କାର, ସେହିଠାରେ ଏକ କ୍ଷୁଦ୍ର ସଂଗ୍ରହାଳୟ ପ୍ରତିଷ୍ଠା ଏବଂ ଧବଳେଶ୍ୱର ମନ୍ଦିରର ଦକ୍ଷିଣ ଦିଗରୁ ଭୂଖୋଦନ ଦ୍ୱାରା ହରପାର୍ବତୀ, ଲକ୍ଷ୍ମୀନାରାୟଣ, ଗଣେଶ, କାର୍ତ୍ତିକେୟ, ବ୍ରହ୍ମା, ଗରୁଡ, ମହେଶ୍ୱର, ପାର୍ବତୀ, ଦୁର୍ଗା, ନାଗ, ଯୋଗୀ, ଦ୍ୱାରପାଳ, ବଭିନ୍ନ ଆକୃତିର ଗଜ; ସିଂହ, ବୃଷଭାଦି ବହୁବିଧ ବିଗ୍ରହର ସଂଗ୍ରହ କେଦାରନାଥଙ୍କ ତତ୍କାଳୀନ କର୍ମସାଧନାର ସୁଫଳ ।

ଏଠାରେ ନିତାନ୍ତ ସ୍ମରଣଯୋଗ୍ୟ ଯେ, କଳାହାଣ୍ଡି ରାଜ୍ୟର ପ୍ରତ୍ନତତ୍ତ୍ୱବିଭାଗରେ ଅବସ୍ଥାପିତ ହେବାର ବହୁପୂର୍ବରୁ ତାଙ୍କଠାରେ ପ୍ରତ୍ନତାତ୍ତ୍ୱିକ ଅଭୀପ୍ସାର ଉଦ୍ରେକ ଘଟିଥିଲା । ୧୯୩୩-୩୪ ମସିହା ବେଳକୁ ସେ "ଯାଜପୁରସ୍ଥ ବିରଜା ମନ୍ଦିରସ୍ଥିତ ଦଶାଶ୍ୱମେଧ କୁଣ୍ଡ"ର ଜୀର୍ଣ୍ଣୋଦ୍ଧାର କାର୍ଯ୍ୟ ପରିଚାଳନାରେ ମନୋନିବେଶ କରିଥିଲେ ଏବଂ ପରେ (୧୯୩୬ରେ) କେଦାରଗୌରୀ ଦେଉଳ ପରିସରର ପୁନର୍ନିର୍ମାଣ କାର୍ଯ୍ୟରେ ବିଶିଷ୍ଟ ଭୂମିକା ନେଇଥିଲେ ।

୧୯୫୦ ଏପ୍ରିଲ ପହିଲା ଠାରୁ ୧୯୭୧ ମାର୍ଚ୍ଚ ୩୧ ତାରିଖ— ଏଇ ଦୀର୍ଘ ଏକୋଇଶ ବର୍ଷ କାଳ ହେଉଛି କେଦାରନାଥଙ୍କ ଜୀବନରେ ନିରବଚ୍ଛିନ୍ନ ସାଧନାର ପ୍ରମୂର୍ତ୍ତ ପରିପ୍ରକାଶ । ଏହି ସମୟର ଉଲ୍ଲେଖନୀୟ କୀର୍ତ୍ତି ମଧ୍ୟରେ ଯେଉଁ କେତୋଟି ଅଗ୍ରଗଣ୍ୟ, ସେଗୁଡିକ ହେଉଛି—

୧ । ୧୯୫୨ ମସିହାରେ ହୀରାପୁର ଗ୍ରାମରେ ଭାରତ ପ୍ରସିଦ୍ଧ ଚୌଷଠୀ ଯୋଗିନୀପୀଠର ଆବିଷ୍କାର ଏବଂ ପରେ କେନ୍ଦ୍ର ପ୍ରତ୍ନତତ୍ତ୍ୱ ସଂସ୍ଥା ଦ୍ୱାରା ତାର ଜୀର୍ଣ୍ଣୋଦ୍ଧାର;

୨ । ୧୯୫୬ ମସିହାରେ ଭୁବନେଶ୍ୱରସ୍ଥ ବିନ୍ଦୁସାଗର ଦକ୍ଷିଣ ତୀରବର୍ତ୍ତୀ ମୋହିନୀ ମନ୍ଦିରର ଜୀର୍ଣ୍ଣୋଦ୍ଧାର;

୩ । ୧୯୫୭ ମସିହାରେ ଭଗିନପ୍ରସାଦ ଗ୍ରାମ ଉପକଣ୍ଠସ୍ଥ ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀର ନାଗନାଗିନ (କାଳଅଣ୍ଡଣ) ମୂର୍ତ୍ତି ସମ୍ପୂର୍ଣ୍ଣ ଅଧିଷ୍ଠାନ; ଏବଂ

୪ । ୧୯୬୨ ମସିହାରେ ଧଉଳି ପାହାଡ ପଶ୍ଚିମରେ ଦୟାନଦୀ କୂଳରେ ଅବସ୍ଥିତ ଭଗ୍ନ ବଇଦେଶ୍ୱର ମନ୍ଦିରର ସଂପୂର୍ଣ୍ଣ ଜୀର୍ଣ୍ଣସଂସ୍କାର ।

## କେନ୍ଦୁଲୀପୀଠ ଓ ଶ୍ରୀ ଜୟଦେବ ପ୍ରସଙ୍ଗ :

ଉପର୍ଯ୍ୟୁକ୍ତ 'ଏକୋଇଶ ବର୍ଷ' ମଧ୍ୟରୁ କେଦାରବାବୁ ନ' ବର୍ଷ ରାଜ୍ୟ ସଂଗ୍ରହାଳୟର ପୋଥି ବିଭାଗର ଦାୟିତ୍ୱରେ ରହିଥିଲେ ଏବଂ ପରବର୍ତ୍ତୀ ବାରବର୍ଷ ସେ ପ୍ରତ୍ନତତ୍ତ୍ୱ ବିଭାଗର ଅଧ୍ୟକ୍ଷ ହୋଇଥିଲେ । ତାଙ୍କର ଏହି ଦୀର୍ଘ କର୍ମକାଳର ସର୍ବୋତ୍ତମରୂପେ ଗୌରବାବହ ଅବଦାନ ହେଉଛି 'ଗୀତଗୋବିନ୍ଦ' ପ୍ରଣେତା ଜୟଦେବଙ୍କର ଓଡ଼ିଆତ୍ୱ ପ୍ରତିଷ୍ଠା ଏବଂ କେନ୍ଦୁଲୀଠାରେ 'ଜୟଦେବ ସାଂସ୍କୃତିକ କେନ୍ଦ୍ର'ର ଉଦ୍‌ଘାଟନ ।

୧୯୧୭ ମସିହାରେ 'ଉତ୍କଳ ସାହିତ୍ୟ ସମାଜ'ର ଏକ ଅଧିବେଶନରେ ଜୟଦେବଙ୍କ ସମ୍ବନ୍ଧରେ ଏକ ପ୍ରବନ୍ଧ ପାଠକରି ସ୍ୱର୍ଗତ ଜଗବନ୍ଧୁ ସିଂହ ଯେ (ଜୟଦେବ) ପ୍ରାଚୀ ତଟବର୍ତ୍ତୀ କେନ୍ଦୁଲି (କେନ୍ଦୁବିଲ୍ୱ) ଠାରେ ଜନ୍ମ ଗ୍ରହଣ କରିଥିଲେ ବୋଲି ଉଲ୍ଲେଖ କରିଥିଲେ । ତାର କିଛି ଦିନ ପରେ ସେହିବର୍ଷ ନଭେମ୍ବର ୨୪ ତାରିଖରେ ଚଟିତ 'ଜୟଦେବ ଜନ୍ମ ବିବ୍ରାଟ' ଶୀର୍ଷକ ଏକ ଦୀର୍ଘ ସନ୍ଦର୍ଭରେ ସ୍ୱର୍ଗତ ପଣ୍ଡିତ ମୃତ୍ୟୁଞ୍ଜୟ ରଥ ବିରୋଧ ମତ ପୋଷଣ କରି ଜୟଦେବଙ୍କ ଉପରେ ବଙ୍ଗୀୟତ୍ୱ ଆରୋପ କରିଥିଲେ । ସେହିଦିନୁ ଜୟଦେବଙ୍କ ଜନ୍ମସ୍ଥାନ ନେଇ ଓଡ଼ିଶାରେ ବାଦାନୁବାଦର ସୂତ୍ରପାତ ହେଲା । ଏହି ପ୍ରଶ୍ନର ମୀମାଂସା ମାର୍ଗରେ କେତେ ଯେ କାଳିକଲମ ବିନିଯୁକ୍ତ, ତାର ହିସାବ ଦେଇହେବ ନାହିଁ ।

ଏଥିପ୍ରତି ଛାତ୍ରାବସ୍ଥାରୁ ଶ୍ରୀଯୁକ୍ତ ମହାପାତ୍ର ଆକର୍ଷିତ ହୋଇ-ଥିଲେ ଏବଂ ଏ ଦିଗରେ ଗବେଷଣା ଅବ୍ୟାହତ ରଖିଥିଲେ ।

୧୯୨୯ରୁ ୧୯୫୫ ମଧ୍ୟରେ ସେ ବାଲିଅନ୍ତା ଓ ଅଡ଼ସପୁର ବାଟେ କେନ୍ଦୁଲି ଯିବା ପାଇଁ ଏକାଧିକ ବାର ଉଦ୍ୟମ କରିଥିଲେ । ବେଣୁପୁରର ଦାଶରଥି ମହାନ୍ତିଙ୍କ ମୁଖରୁ କେନ୍ଦୁଲିର ପ୍ରାଚୀନ କୀର୍ତ୍ତି ସମ୍ବନ୍ଧରେ ତଥ୍ୟ ସଂଗ୍ରହ କରିଥିଲେ । ୧୯୩୬ ମସିହାରେ ପ୍ରକାଶିତ ସ୍ୱର୍ଗତ କନ୍ଧୁଣୀକର କରଙ୍କ ପ୍ରବନ୍ଧ ଏବଂ ୧୯୫୬ ମସିହାରେ ପ୍ରକାଶିତ ପଣ୍ଡିତ ସଦାଶିବ ରଥ ଶର୍ମାଙ୍କର 'ଜୟଦେବ ଓ ଗୀତଗୋବିନ୍ଦ' ପୁସ୍ତକ ପଢ଼ିଥିଲେ । ଏଣୁ ଅଦମ୍ୟ ଉତ୍ସାହର ବଶବର୍ତ୍ତୀ ହୋଇ ଶେଷରେ ୧୯୫୬ ମସିହା ପୌଷଶୁକ୍ଳ ତୃତୀୟା ସୋମବାର ଦିନ କେଦାରନାଥ ଉତ୍କଳର ଅନ୍ୟତମ ଶ୍ରେଷ୍ଠ ପ୍ରତ୍ନତତ୍ତ୍ୱବିଦ୍ ସ୍ୱର୍ଗତ ପରମାନନ୍ଦ ଆଚାର୍ଯ୍ୟ ଓ ପ୍ରଖ୍ୟାତ ଲିପିତତ୍ତ୍ୱବିତ୍ ଡକ୍ଟର ଦୀନେଶଚନ୍ଦ୍ର ସରକାରଙ୍କ ସଙ୍ଗରେ ଗୋଟାଏ ଜିପ୍ ଗାଡ଼ିରେ ଅଠାନ୍ତରବାଟେ କେନ୍ଦୁଲିକୁ ଯାଇଥିଲେ । ସେଠାରେ ପ୍ରତ୍ନତାତ୍ତ୍ୱିକ ଭୂପଞ୍ଜେମା ପରେ ଭଗ୍ନ ମୂର୍ତ୍ତିସ୍ତମ୍ଭ; କୋଟାନ୍ତ ଖ ଜଳ ଶସ୍ୟ ଓ ଅନ୍ୟାନ୍ୟ ପ୍ରାଚୀନ କୀର୍ତ୍ତିର ଭଗ୍ନାବଶେଷ ଦେଖି ତାଙ୍କ ମନରେ ନୂତନ ଆଶା ଓ ଉନ୍ମାଦନାର ସଂଚାର ଘଟିଥିଲା । ବାଧିରେ ସେ ଥିଲେ ରାଧା-ଗୋପୀନାଥଙ୍କ ସନ୍ତାନ ।

ଏହାପରେ ୧୯୬୪ରୁ ୧୯୬୬ ମସିହା ମଧ୍ୟରେ ସେ ଅକ୍ଳାନ୍ତ ଉଦ୍ୟମ କରି ଭୁବନେଶ୍ୱରର ତଦାନୀନ୍ତନ ଅନୁମଣ୍ଡଳୀୟ ଅଧିକାରୀ ସ୍ୱର୍ଗତ ରାଜେନ୍ଦ୍ରକୁମାର ସାହୁ ଓ ପୁରୀ ଜିଲ୍ଲାପାଳ ଦେବୀପ୍ରସାଦ ଦାସଙ୍କ ସହଯୋଗରେ କେନ୍ଦୁଲିର ଜୟଦେବ ପୀଠର ପୁନରୁଦ୍ଧାର କାର୍ଯ୍ୟରେ ସଫଳକାମ ହୋଇଥିଲେ । ୧୯୬୬ ମସିହା ଏପ୍ରିଲ ୨୪ ତାରିଖ ଅକ୍ଷୟତୃତୀୟା ଦିନ କେଦାରନାଥଙ୍କର ଅକ୍ଷୟ କୀର୍ତ୍ତିସ୍ୱରୂପ ଛଅ ଏକର ବିଶିଷ୍ଟ ଚାରି ବାଡ଼ ଘେରା ଉଦ୍ୟାନ ମଧ୍ୟରେ ଏକ ପକ୍କା ଗୃହ ନିର୍ମିତ ହୋଇ 'ଜୟଦେବ ସାଂସ୍କୃତିକ କେନ୍ଦ୍ର' ଉଦ୍‌ଘାଟିତ ହେଲା ।

କେବଳ ଏତିକି ନୁହେଁ, 'ଶ୍ରୀ ଜୟଦେବ ଓ ଶ୍ରୀ ଗୀତଗୋବିନ୍ଦ' ନାମକ ସାଢ଼େ ତିନିଶହ ପୃଷ୍ଠାବ୍ୟାପୀ ଏକ ଉଚ୍ଚକୋଟୀର ଗବେଷଣା-ମୂଳକ ଗ୍ରନ୍ଥ ଲେଖି ସେ ପ୍ରମାଣ କରିଦେଲେ—

"ଦ୍ୱାଦଶ ଶତାବ୍ଦୀରେ ପ୍ରାଚୀନଦୀ କୂଳବର୍ତ୍ତୀ କେନ୍ଦୁବିଲ୍ୱ ଶାସନରେ ଆବିର୍ଭୂତ କବିରାଜ ଶ୍ରୀ ଜୟଦେବ ସମସାମୟିକ (୧୧୫୭-୭୦) ଗଙ୍ଗ ସମ୍ରାଟଙ୍କ ରାଜସଭାର ଶ୍ରେଷ୍ଠ ପଣ୍ଡିତ ଥିଲେ। ଶ୍ରୀ ଜଗନ୍ନାଥ ମନ୍ଦିରରେ ଲକ୍ଷ୍ମଣ ସେନଙ୍କ ସିଂହାସନାରୋହଣ (୧୧୭୮) ପୂର୍ବରୁ 'ଶ୍ରୀ ଗୀତଗୋବିନ୍ଦ' ରଚିତ ଓ ଗୀତ ହେଉଥିଲା।" (ପୃଷ୍ଠା—୨୪୮)

ପୁନଶ୍ଚ, ସେ ଅକାଟ୍ୟ ଯୁକ୍ତିବଳରେ ଦର୍ଶାଇ ଦେଲେ—"ବୀରଭୂମ ଜିଲ୍ଲାର ଅଜୟ ନଦୀ ତୀରବର୍ତ୍ତୀ କେନ୍ଦୁବିଲ୍ୱ ପ୍ରାଚୀ ତୀରବର୍ତ୍ତୀ କେନ୍ଦବିଲ୍ୱ ପରି କୌଣସି ଯୁଗରେ ଏକ ବ୍ରାହ୍ମଣୋତ୍ତର ନ ଥିଲା ବା ଏହାର ଆଖପାଖ ଅଞ୍ଚଳରେ କୌଣସି ବ୍ରାହ୍ମଣ ଶାସନ ବା ପ୍ରାଚୀନ ମନ୍ଦିରର ଅବସ୍ଥିତି ସମ୍ବନ୍ଧରେ କୌଣସି ତାମ୍ରଶାସନ, ଶିଳାଲେଖ ବା ପ୍ରାଚୀନ ଗ୍ରନ୍ଥରେ ଉଲ୍ଲେଖ ନାହିଁ।" (ପୃଷ୍ଠା-୩୦)

ଏ ମଧ୍ୟରେ ଜୟଦେବପୀଠ କେନ୍ଦୁଲିଠାରେ ସଭାଗୃହ ଓ ରଙ୍ଗମଞ୍ଚ ଉଦ୍ଦେଶ୍ୟରେ ବ୍ୟବହାର ଲାଗି 'ଶ୍ରୀ ଜୟଦେବ ମଣ୍ଡପ' ତୋଳା ଯାଇଛି ଏବଂ ଏକ ଉପାଦେୟ ସଂକଳନ 'Souvenir on Sri Jayadeva' ପ୍ରକାଶିତ ହୋଇଛି। ଜୟଦେବଙ୍କ ସମ୍ପର୍କରେ କେଦାରନାଥଙ୍କ ପ୍ରଥମ ଲେଖା 'ଜୟଦେବଙ୍କ ସମୟ ନିରୂପଣ' ୧୯୩୫ ମସିହାରେ 'ଝଙ୍କାର' ପତ୍ରିକାରେ ପ୍ରକାଶ ପାଇଥିଲା। ସେହିଦିନୁ ଏ ଦିଗରେ ତାଙ୍କ ଜିଜ୍ଞାସାର ଅନ୍ତ ନାହିଁ। ଅଦ୍ୟାପି ସେ ଏ ସଂସ୍କାରୀୟ କାର୍ଯ୍ୟରେ ଅଭିନିବିଷ୍ଟ। ୧୯୭୧ ଏପ୍ରିଲ ପହିଲରେ ସରକାରୀ କର୍ମ କ୍ଷେତ୍ରରୁ ଅବସର ଗ୍ରହଣ କଲାପରେ ତାଙ୍କ ଉଦ୍ୟମରେ ଧ୍ୱଂସସ୍ତୂପରୁ ପୁନରୁଦ୍ଧାର କରାଯାଇଥିବା ବିଶିଷ୍ଟ ଚଣ୍ଡୀମନ୍ଦିର ପୁନର୍ନିର୍ମାଣ କରାଯାଇ ଏହି କେନ୍ଦୁଲିପୀଠ ଠାରେ ୧୯୭୨ ମସିହାରେ ସେଠାକାର ଅଧିଷ୍ଠାତ୍ରୀ ଦେବୀ ମା ଅମ୍ବିକାଙ୍କୁ ପୁନଃଅଧିଷ୍ଠିତ କରାଯାଇଛି। ସେଠାରେ ଏକ କ୍ଷୁଦ୍ର ସଂଗ୍ରହାଳୟ (ମ୍ୟୁଜିୟମ) ମଧ୍ୟ ପ୍ରତିଷ୍ଠିତ ହୋଇଛି। ସଂପ୍ରତି ଜବାହରଲାଲ ନେହରୁ ବିଶ୍ୱବିଦ୍ୟାଳୟ କ୍ଷେତ୍ରରୁ ଡକ୍ଟର (ଶ୍ରୀମତୀ) କପିଳ ବାତ୍ସାୟନଙ୍କ ଅଧ୍ୟକ୍ଷତାରେ ଆୟୋଜିତ ଜୟଦେବ ସଂପର୍କୀୟ ଜାତୀୟ ଆଲୋଚନାଚକ୍ର ପାଇଁ ଓଡ଼ିଶା ରାଜ୍ୟର ଦାୟିତ୍ୱରେ ଅଛନ୍ତି ଶ୍ରୀଯୁକ୍ତ ମହାପାତ୍ର।

## ସାହିତ୍ୟିକ ଗବେଷଣାପ୍ରବାହର ଅମୃତ ନିର୍ଝର :

କେଦାରନାଥଙ୍କ ସାଧନା ପଥରେ ପ୍ରତ୍ନତାତ୍ତ୍ୱିକ ଅନୁସନ୍ଧାନ ସାଙ୍ଗକୁ ସାହିତ୍ୟିକ ଗବେଷଣା ହାତଛନ୍ଦାଛନ୍ଦି ହୋଇ ଚାଲିଛନ୍ତି । ସେ ପୋଥିନାଥ, ପଥରନାଥ-ଉଭୟ । ୧୯୩୨ ମସିହା ସେପ୍ଟେମ୍ବର ମାସରେ ଶିଶୁପାଳଗଡ଼ ଓ ତୋଷଳୀ ସମ୍ପର୍କରେ ତାଙ୍କର ପ୍ରଥମ ପ୍ରବନ୍ଧ Ravenshavian ଇଂରାଜୀ ପତ୍ରିକାରେ ପ୍ରକାଶ ପାଇଥିଲା । ସେହିଦିନୁ ଅଦ୍ୟାବଧି ତାଙ୍କର ପ୍ରାୟ ଦୁଇଶହ ପ୍ରବନ୍ଧ ବିଭିନ୍ନ କାଳରେ ବିଭିନ୍ନ ଭାଷାର ପତ୍ରପତ୍ରିକାରେ ପ୍ରକାଶ ପାଇସାରିଲାଣି ।

ତାଙ୍କ ପ୍ରବନ୍ଧଗୁଡ଼ିକୁ ମୁଖ୍ୟତଃ ଚାରୋଟି ବିଭାଗରେ ବିଭକ୍ତ କରାଯାଇପାରେ; ଯଥା—ଐତିହାସିକ, ପ୍ରତ୍ନତାତ୍ତ୍ୱିକ, ପ୍ରାଚୀନ ସଂସ୍କୃତ ସାହିତ୍ୟ ସମ୍ବନ୍ଧୀୟ ଏବଂ ଦେବଦେବୀ ବା ଧର୍ମ ସଂପର୍କୀୟ ରଚନା । ୧୯୩୨ ଠାରୁ ୧୯୭୫ ମଧ୍ୟରେ ସେ ପ୍ରତ୍ନତତ୍ତ୍ୱ ବିଷୟରେ ଇଂରାଜୀରେ ୧୮ଟି ଏବଂ ଓଡ଼ିଆରେ ୩୬ଟି ପ୍ରବନ୍ଧ ପ୍ରକାଶ କରିଛନ୍ତି । ଶିଶୁପାଳଗଡ଼, ତୋଷଳୀ, କେନ୍ଦୁଲି, ଗନ୍ଧମାର୍ଦ୍ଦନ ପାହାଡ଼, ଯୋଗିନୀ (ହୀରାପୁର), ବେଲଖଣ୍ଡି ଇତ୍ୟାଦି ବିଷୟକ ପ୍ରବନ୍ଧଗୁଡ଼ିକ ଏହି ବିଭାଗର ଅନ୍ତର୍ଗତ । ଐତିହାସିକ ପ୍ରବନ୍ଧଗୁଡ଼ିକ ମଧ୍ୟରେ ଇଂରାଜୀ ଭାଷାରେ ଲିଖିତ ଉଦ୍ୟୋତ-କେଶରୀ, ଲଲାଟେନ୍ଦୁ କେଶରୀ, ରାମଚନ୍ଦ୍ର ଦେବ, କଳାହାଣ୍ଡି ରାଜ୍ୟରେ ଗଙ୍ଗଶକ୍ତିର ଅଭ୍ୟୁଦୟ, ବ୍ରାହ୍ମଣୀ ଉପତ୍ୟକାର ଭଗ୍ନାବଶେଷ ଆଦି ବିଷୟକ ୬ଟି ପ୍ରବନ୍ଧ ଏବଂ ବୁଦ୍ଧଦେବଙ୍କ ଜନ୍ମସ୍ଥାନ, ଇନ୍ଦ୍ରଦ୍ୟୁମ୍ନ କିମ୍ବଦନ୍ତୀର ଐତିହାସିକତା, ତ୍ରିକଳିଙ୍ଗ ପରିଚୟ, ତାମ୍ରଲିପ୍ତି ବନ୍ଦର, ଉତ୍କଳରେ ଗୁପ୍ତରାଜତ୍ୱ, ଯବନ ରାଜତ୍ୱ, ଅଶୋକ, ହାତୀଗୁମ୍ଫା, ସୋମବଂଶୀ ନରପତିଙ୍କ ରାଜତ୍ୱକାଳ, ଗଙ୍ଗରାଜ ମନ୍ଦିର ନିର୍ମାଣ କାଳ, ବିଦ୍ୟାଧରପୁରର ଦ୍ୱିଭାଷୀ ଶିଳାଲେଖ, ବ୍ରିଟିଶ କୁଠିମାନର କେନ୍ଦ୍ର ଗଞ୍ଜାମ ଦୁର୍ଗ, ପାଲୁର ଓ ଗଞ୍ଜା, ଶତ୍ରୁଭଞ୍ଜଙ୍କ ତାମ୍ର ଶାସନ ଇତ୍ୟାଦି ୧୭ ଗୋଟି ଓଡ଼ିଆ ସନ୍ଦର୍ଭ ଇତିହାସ ଜଗତକୁ ନୂତନ ଆଲୋକ ପ୍ରଦର୍ଶନ କରିବା ଦିଗରେ ଅଦ୍ୱିତୀୟ ।

ଇତିହାସ ଓ ପ୍ରତ୍ନତତ୍ତ୍ୱ ମୂଳକ ରଚନା ପଛକୁ ତାଙ୍କର ସଂସ୍କୃତ ତଥା ପ୍ରାଚୀନ ସାହିତ୍ୟ ସମ୍ବନ୍ଧୀୟ ପ୍ରବନ୍ଧଗୁଡ଼ିକ ସଂଖ୍ୟାତ୍ମକ ଓ ଗୁଣାତ୍ମକ

ଦୃଷ୍ଟିରୁ ପାଠକସମାଜର ଦୃଷ୍ଟି ଆକର୍ଷଣ କରେ । ଶମ୍ଭୂକର ବାଜପେୟୀ, ଗୋବିନ୍ଦ ଲୀଳାମୃତ, ଶ୍ରୀ ଗୀତଗୋବିନ୍ଦ, ଗାଥା ସପ୍ତଶତୀ, ଶ୍ରୀକୃଷ୍ଣ କର୍ଣ୍ଣାମୃତମ୍, ପଞ୍ଚତନ୍ତ୍ର, ବେଣୀସଂହାର, ଯଶସ୍ତିଳକ ଚମ୍ପୂ, ଶ୍ରୀ ଚୈତନ୍ୟ ଚନ୍ଦ୍ରୋଦୟ ନାଟକ; ହୃଦ୍ୟାଭୂଷଣ, ଶତାନନ୍ଦ, ମହାମହୋପାଧ୍ୟାୟ କୃଷ୍ଣମିଶ୍ର, କବିରାଜ ନାରାୟଣ ଦାସ କୃତ ଶ୍ରୀ ଗୀତଗୋବିନ୍ଦ, ରୁଦ୍ରସୁଧାନିଧି, କାମଦେବ ଦତ୍ତ, ପଞ୍ଚସଖା ଯୁଗକାଳୀନ ଓଡ଼ିଶାର ସଂସ୍କୃତ ସାହିତ୍ୟ, ସଂସ୍କୃତ ସାହିତ୍ୟ ଚର୍ଚ୍ଚାର କେନ୍ଦ୍ର ପୁଣ୍ୟ ନୀଳାଚଳ ଧାମ ଇତ୍ୟାଦି ଇଂରାଜୀ ଭାଷାରେ ଲିଖିତ ୩୯ ଗୋଟି ଏବଂ ୬୯ ଗୋଟି ଓଡ଼ିଆ ପ୍ରବନ୍ଧ ଦୈନିକ ଆଶା; ଉତ୍କଳ ସାହିତ୍ୟ, ସହକାର ଠାରୁ ଆରମ୍ଭ କରି ଓଡ଼ିଶା ହିଷ୍ଟୋରିକାଲ ରିସର୍ଚ୍ଚ ଜର୍ଣ୍ଣାଲ, କୋଣାର୍କ, ଉତ୍ତର ସମାଜ, ପ୍ରଜାତନ୍ତ୍ର, ମାତୃଭୂମି ପର୍ଯ୍ୟନ୍ତ ବିଭିନ୍ନ ପତ୍ର ପତ୍ରିକାରେ ବିଭିନ୍ନ କାଳରେ ପ୍ରକାଶ ଲାଭ କରିଛି ।

ତାଙ୍କର ଐତିହାସିକ ତଥା ପ୍ରତ୍ନତାତ୍ତ୍ୱିକ ରଚନାଗୁଡ଼ିକ ମଧ୍ୟରୁ ଅନେକ ଆମର ଧର୍ମଧାରା ତଥା ଦେବଦେବୀ ମନ୍ଦିର ଗୁଡ଼ିକ ଉପରେ ଆଧାରିତ । ଅନନ୍ତ ବାସୁଦେବ ମନ୍ଦିର, ରାଜରାଣୀ ମନ୍ଦିର, ଭର୍ଗବଗଡ଼ର ମଧୁକେଶ୍ୱର ମନ୍ଦିର, ଯାଜପୁରର ଦଶାଶ୍ୱମେଧ ଘାଟ, ଶ୍ରୀକ୍ଷେତ୍ରର ଜଗନ୍ନାଥ ମନ୍ଦିର, ନବକଳେବରର ପ୍ରାଚୀନତା, ଭାରତର ଧର୍ମମତବାଦ ଓ ଜଗନ୍ନାଥ, ପୂର୍ବଭାରତର ଜଗନ୍ନାଥ ମନ୍ଦିର ସମୂହ, ଓଡ଼ିଶାର ଶୈବଧର୍ମ, କଳିଙ୍ଗର ବୌଦ୍ଧକୀର୍ତ୍ତି, କଟକର ପ୍ରାଚୀନ ମୁସଲମାନ କୀର୍ତ୍ତି ଇତ୍ୟାଦି ବିଷୟରେ ସେ ଅର୍ଦ୍ଧଶତାଧିକ ପ୍ରବନ୍ଧ ପ୍ରକାଶ କରିସାରିଛନ୍ତି ।

ଏସବୁ ବ୍ୟତୀତ ତାଙ୍କର ଅନ୍ୟାନ୍ୟ ବିବିଧ ବିଷୟକ ଯେଉଁ ଶତାଧିକ ପ୍ରବନ୍ଧ ପ୍ରକାଶ ପାଇଛି, ତନ୍ମଧ୍ୟରୁ କେତୋଟି ହେଉଛି— ପ୍ରାଚୀନ ଓଡ଼ିଶାରେ ଐତିହାସିକ ଗବେଷଣା ଧାରା, ପ୍ରାଚୀନ ଓଡ଼ିଶାରେ ସଙ୍ଗୀତ ଚର୍ଚ୍ଚା, ପ୍ରାଚୀନ ଓଡ଼ିଶାରେ ଜ୍ୟୋତିଷ ଚର୍ଚ୍ଚା, ଉତ୍କଳର ପ୍ରାଚୀନ କୀର୍ତ୍ତି, ପ୍ରାଚୀନ ସାହିତ୍ୟରେ ସମୁଦ୍ର ଓ ସମୁଦ୍ର ଯାତ୍ରା ବର୍ଣ୍ଣନା, ପ୍ରାଚୀନ ଉତ୍କଳରେ ଗଣିତ ଚର୍ଚ୍ଚା, ପ୍ରାଚୀନ ଉତ୍କଳର ଧର୍ମ ଓ ସାହିତ୍ୟରେ ତାନ୍ତ୍ରିକମତର ପ୍ରଭାବ, ଓଡ଼ିଶାର ଶିଳ୍ପ ଓ ସ୍ଥାପତ୍ୟରେ ଶ୍ରୀ ଗୀତଗୋବିନ୍ଦର ପ୍ରଭାବ, ସୁନିଆଁ ଓ ଅଙ୍କ ଗଣନା, ସୌରମାନ ମାସ ତଥା

ଅଧର ଗଣନା, ଉତ୍କଳର ଶିଳ୍ପରେ ନାଗନାଗିଣୀ, ଉତ୍କଳୀୟ ଶିଳ୍ପରେ ଗଜସିଂହ, ଉତ୍କଳୀୟ ସ୍ଥାପତ୍ୟରେ ଶକ୍ତି ପ୍ରତିମା, ପ୍ରାଚୀନ ଉତ୍କଳରେ ନାଗବଜନ୍ତୁ, ମେଦିନୀପୁରର ଓଡ଼ିଆ ଜାଗରଣ, କାୟସ୍ଥ ଜାତି, ଉତ୍କଳ ଓ ଆନ୍ଧ୍ର, ଗୁଜରାଟୀ ସାହିତ୍ୟ ଉପରେ ଶ୍ରୀ ଗୀତଗୋବିନ୍ଦର ପ୍ରଭାବ, ମଣିପୁରୀ ପାଲ୍ଲ ସଂକୀର୍ତ୍ତନ, କଥକାଳୀ ନୃତ୍ୟ ଇତ୍ୟାଦି । ଏ ମଧ୍ୟରୁ ଅଧିକାଂଶ ପ୍ରବନ୍ଧ ଝଙ୍କାର, ସମାଜ, ମାତୃଭୂମି, ନୂତନ, ନବରବି ଓ ପ୍ରଜାତନ୍ତ୍ରର ବିଭିନ୍ନ ସଂଖ୍ୟାରେ ପ୍ରକାଶିତ ।

କେବଳ ପ୍ରାବନ୍ଧିକ ରୂପରେ କାହିଁକି, ବହୁ ପ୍ରାଚୀନ ପୋଥିର ସୁସଂପାଦକ ତଥା ଲୁପ୍ତ ସଂସ୍କୃତ ସାହିତ୍ୟର ସଙ୍କଳୟିତା ଭାବରେ ତାଙ୍କର ଅବଦାନ ଅନସ୍ୱୀକାର୍ଯ୍ୟ । କଳ୍ପଲତା, କଳାବତୀ, ବୃହତ ଇଚ୍ଛାବତୀ, ପରିମଳା, ପ୍ରେମଲୋଚନା ଆଦି ସଂସ୍କୃତ ଗ୍ରନ୍ଥର ସଂପାଦନା ଏବଂ ଚାରିଟି ଖଣ୍ଡରେ ସଂସ୍କୃତ ସାହିତ୍ୟପୂର ସବିସ୍ତୃତ ତାଲିକା ପ୍ରସ୍ତୁତ ( Descriptive Cotalogue of Sanskrit Literature ) ଆମ ସାହିତ୍ୟକୁ ତାଙ୍କର ମହନୀୟ ଦାନ । ଉତ୍କଳୀୟ କୃତିକୁ ଅନ୍ୟ ଭାଷାଭାଷୀଙ୍କ ନିକଟରେ ପହଞ୍ଚାଇବା ଉଦ୍ଦେଶ୍ୟରେ ହିନ୍ଦୀରେ ମଧ୍ୟ ସେ ଏକାଧିକ ପ୍ରବନ୍ଧ ପ୍ରକାଶ କରି ପ୍ରଶଂସାର୍ହ ହୋଇଛନ୍ତି । 'ହିନ୍ଦୀ ସାହିତ୍ୟ ପର ଗୀତଗୋବିନ୍ଦ କା ପ୍ରଭାବ', 'ଓଡ଼ିଶା କା ବିଭବ' 'ଉତ୍କଳ କା ପ୍ରାଚୀନ ଅଭିଲେଖ ଔର ମନ୍ଦିର ଗାନ୍ଧୀମେ ରାମକଥା' ଇତ୍ୟାଦି ପ୍ରବନ୍ଧ 'ବନମୟୂ' ଓ 'ପ୍ରଗତି' ହିନ୍ଦୀ ପତ୍ରିକାର କଳେବର ମଣ୍ଡନ କରିଛି ।

## ଅବସରକାଳୀନ ଜୀବନର ଦାନ :

ଶ୍ରୀଯୁକ୍ତ ମହାପାତ୍ର ୧୯୬୧ ମସିହା ଏପ୍ରିଲ ପହିଲାରୁ ଚାକିରି-ଜୀବନରୁ ଅବସର ନେଇଥିଲେ ସୁଦ୍ଧା ବୟସର ଛାପ ବା ଅବସନ୍ନତାର ଛାୟା ତାଙ୍କଠାରେ ପରିଲକ୍ଷିତ ହୁଏ ନାହିଁ । ସେ ତିର ସତେଜ, ପ୍ରଫୁଲ୍ଲ ଓ କର୍ମତତ୍ପର, ତାଙ୍କର ଧୀଷଣାଶକ୍ତି ଏବେ ବି ପ୍ରଖର । ଭୁବନେଶ୍ୱର ବର୍ଣ୍ଣଷଣ୍ଡେଶ୍ୱର ମନ୍ଦିର, ପୁବେଶ୍ୱର ମନ୍ଦିର, କେଦାରଷାହୀ ଓ କପିଳେଶ୍ୱର ଗୋଡ଼ସ୍ଥ ଦୁଇଟି ଶିବମନ୍ଦିର, ସ୍ୱର୍ଣ୍ଣଜାଳେଶ୍ୱର ମନ୍ଦିର,

ଶିଶିରେଶ୍ୱର ମନ୍ଦିର, ବକେଶ୍ୱର ମନ୍ଦିର, ଗଙ୍ଗୁଆନଦୀ ତୀରବର୍ତ୍ତୀ ସାନ୍ତରାପୁରସ୍ଥ ବରୁଣେଶ୍ୱର ମନ୍ଦିର ପ୍ରଭୃତିର ପୁନରୁଦ୍ଧାର କାର୍ଯ୍ୟ ମୂଳରେ ତାଙ୍କର ପ୍ରତ୍ନତାତ୍ତ୍ୱିକ ଗବେଷଣାଜ୍ଞାନ ସନ୍ନିବିଷ୍ଟ । ଅବସରପ୍ରାପ୍ତ ଜୀବନରେ ରାଜ୍ୟ ପ୍ରତ୍ନତତ୍ତ୍ୱ ବିଭାଗ ତଥା କେନ୍ଦ୍ର ପ୍ରତ୍ନତାତ୍ତ୍ୱିକ ପରି-ମାପକ ସଂସ୍ଥା ଆନୁକୂଲ୍ୟରେ ନଗରଉନ୍ନୟନ ବିଭାଗର ବିଶେଷଜ୍ଞ ଭାବରେ ଏସବୁ କାର୍ଯ୍ୟର ସେ ତତ୍ତ୍ୱାବଧାନ କରିଛନ୍ତି ।

ଏହା ସାଙ୍ଗକୁ ତାଙ୍କର ଧାରାବାହିକ ଗବେଷଣା ଅବ୍ୟାହତ ରହିଛି । ଟିଟିଲାଗଡ଼ ଡ଼.ଏ.ଭି. ମହାବିଦ୍ୟାଳୟରେ ପ୍ରଦତ୍ତ ଅଭିଭାଷଣ ( ୧୯୭୭ ), 'The Jagannath Temples in Eastern India' ଗ୍ରନ୍ଥର ପ୍ରକାଶନ (୧୯୭୭), 'ଶ୍ରୀ ଜଗନ୍ନାଥ ସଂସ୍କୃତିର କ୍ରମବିକାଶ' (୧୯୭୮), 'ଶ୍ରୀ କ୍ଷେତ୍ରମହାତ୍ମ୍ୟ' (୧୯୮୦) ପ୍ରଭୃତି ରଚନା ତାଙ୍କ ଅବସର-କାଳୀନ ଜୀବନର ଅମୂଲ୍ୟ ଅବଦାନ । ସଂପ୍ରତି ସେ ଓଡ଼ିଶାର ଏକ ସୁବୃହତ୍ ସାଂସ୍କୃତିକ ଇତିହାସ ପ୍ରଣୟନ ଦିଗରେ ବ୍ରତୀ ହୋଇଛନ୍ତି ।

## ପ୍ରବହମାନ ଜୀବନସ୍ରୋତରେ ଅନେକ ତରଙ୍ଗ :

କେଦାରନାଥବାବୁ ନିରଳସ, ନିୟମାନୁବର୍ତ୍ତୀ, ମିତାହାରୀ ଓ ପ୍ରଗାଢ଼ ପରିଶ୍ରମୀ । ତଥାପି, ୧୯୭୪ ମସିହାରେ ତାଙ୍କ ଉଦରରେ ଟ୍ୟୁମର ଯୋଗୁଁ ଏକ ବଡ଼ ଧରଣ ଅସ୍ତ୍ରୋପଚାରର ସମ୍ମୁଖୀନ ହେଲେ । ଡାକ୍ତର ଗିରିଜାଶଙ୍କର ଦାସ ମହାପାତ୍ରଙ୍କର ସୁଦକ୍ଷ ଚିକିତ୍ସା ଦ୍ୱାରା ସେ ପୁନର୍ଜୀବନ ପ୍ରାପ୍ତହେଲେ । ତା'ପରେ ୧୯୭୭ ମସିହା ମାର୍ଚ୍ଚ ୨୨ ତାରିଖରେ ପ୍ରବଳ ରକ୍ତଚାପବେଗରେ ପୀଡ଼ିତ ହୋଇ ନିଜର ମାନସିକ ଦୃଢ଼ତା ହରାଇ ବସିଲେ । ସେହିଦିନୁ ତାଙ୍କ କଲମର ଗତି ମନ୍ଥର ହୋଇଯାଇଛି ବୋଲି କୁହାଯାଇପାରେ ।

କେବଳ ଏତିକ ନୁହେଁ, ଅତୀତରେ ସେ ଏକାଧିକବାର ଗୁରୁତର ଅସୁସ୍ଥତା ଭୋଗିଛନ୍ତି । ୧୯୩୧ରେ ହଇଜା, ୧୯୩୮ରେ ଟାଇଫଏଡ୍, ୧୯୪୨ରେ ମାଲଜ୍ୱର, ୧୯୬୨ରେ ବସନ୍ତ ବା ହାଡ଼-ଫୁଟିରେ ଆକ୍ରାନ୍ତ ହୋଇ ସେ ତିଳ ତିଳ କଷ୍ଟ ଅନୁଭବ କରିଛନ୍ତି ।

ଖାଲି ଗୋରାତମଣ ନୁହେଁ, ହିଂସ୍ରଜନ୍ତୁର ପ୍ରାଦୁର୍ଭାବରୁ ମଧ୍ୟ ସେ ବହୁବାର ରକ୍ଷା ପାଇଛନ୍ତି । ୧୯୪୫ ମସିହାରେ କଳାହାଣ୍ଡିର ଦେବାନ ଓ ଅନ୍ୟ ଜଣେ ସାଙ୍ଗରେ ହାତୀରେ ବସି ରାମପୁର ଜଙ୍ଗଲର ଭଗ୍ନଶିବ ମୂର୍ତ୍ତି ଦେଖିବାକୁ ଗଲାବେଳେ ମହାବଳ ବାଘ ତାଙ୍କର ପିଛା କରିଥିଲା । ବେଲଖଣ୍ଡିଠାରୁ କେଶିଙ୍ଗା ଯିବା ବାଟରେ ବଣାଖମଣ୍ଡରେ ୧୦ । ୨୦ ଗଜ ପଛରୁ ଗୋଟାଏ ବାଘ ତାଙ୍କ ଖୋଲାଶଗଡ଼ର ଅନୁ-ଧାବନ କରିଥିଲା; ୧୦ ଗଜ କି ୨୦ ଗଜ ଦୂର ନୁହେଁ, ସାର୍ଦ୍ଧ ୨ମାଇଲ ରାସ୍ତା ପର୍ଯ୍ୟନ୍ତ ! କେଶିଙ୍ଗା ପାଖରେ ହଠାତ୍ ଦଳେ ଆଦିବାସୀ ଆସି ପହଞ୍ଚିଲେ ବୋଲି ସେ ତା କବଳରୁ ରକ୍ଷା ପାଇଥିଲେ । ସେହିପରି ଆଉ ଥରେ ଶଗଡ଼ରେ ବସି ରଣପୁରଠାରୁ ରାଜସୁନାଖଳା ଆସୁଥିଲା-ବେଳେ ସେ ବ୍ୟାଘ୍ରଭୟର ଶିକାର ହୋଇଥିଲେ । ପୋଲିସ ସବ୍-ଇନସ୍ପେକ୍ଟରଙ୍କର ଘାନବନ୍ଧୁ ମହାନ୍ତିଙ୍କର ସେହି ଶଗଡ଼ଟା ଖୁବ୍ ଉଚ୍ଚା ଥିଲା ଓ ବଡ଼ବଡ଼ ବଳଦ ଯୋଚା ଯାଇଥିଲା ବୋଲି ବୋଧହୁଏ ସେହି ବ୍ୟାଘ୍ର ଅକ୍ରମଣ କରିବାକୁ ସାହସ କରି ନଥିଲା ।

୧୯୬୦ ମସିହାରେ ଯୋଗମୁଣ୍ଡା ପାହାଡ଼ରେ ଥିବା ମଲ୍ଲିକେଶ୍ୱର ମନ୍ଦିର ଦେଖିବାକୁ ଯାଇ ମନ୍ଦିର ମୁଖଶାଳାଠାରେ ନଇଁପଡ଼ି ଭିତରକୁ ଚଳିଗଲା ବେଳକୁ ମୁଣ୍ଡଉପରେ ଥିବା ନାଗସାପଟି ଚୁପି ହୋଇ ଯାଇଥିଲା, ତଥାପି ମନ୍ଦିର କୀର୍ତ୍ତି-ଉଦ୍ଧାରକର୍ତ୍ତାଙ୍କୁ ଆଘାତ କରିନଥିଲା । ଲକ୍ଷ୍ମୀନାରାୟଣ ସାହୁଙ୍କ ସହ ଶିଶୁପାଳ ଗଡ଼ ପରିଦର୍ଶନ ସମୟରେ ବ୍ରହ୍ମ ନକଟବର୍ତ୍ତୀ ମଣ୍ଡପରେ ମସ୍ତବଡ଼ ଗୋଖର ଫଁଫାଁ ଟେକି ଗର୍ଜନ କରି ଥିଲା । ମାତ୍ର ଅଳ୍ପ ସମୟପରେ ଧୀରେ ଧୀରେ ଶାନ୍ତଭାବ ଢଙ୍ଗରେ ଚାଲିଯାଇଥିଲା ।

ଏଇ ସବୁ ବ୍ୟାଘ୍ର ଓ ସର୍ପଗଣ ସତେ ଯେମିତି ଶିବ ଓ ଶକ୍ତିଙ୍କର ଆଶିଷ-ସନ୍ତାନ କେଦାରନାଥଙ୍କୁ ସ୍ୱ ସ୍ୱ ପ୍ରଭୁଙ୍କର ଭକ୍ତରୂପେ ସ୍ୱାଗତ ସମ୍ଭାଷଣ ଜଣାଉଥିଲେ ମାତ୍ର !

## ଦୈବୀଶକ୍ତି ଓ ଜ୍ୟୋତିଷବିଦ୍ୟାରେ ବିଶ୍ୱାସ:

ବାସ୍ତବିକ୍ ଐତିହାସିକ କେଦାରନାଥଙ୍କ ଧର୍ମବିଶ୍ୱାସ, ଈଶ୍ୱର-ଭକ୍ତି ଓ ଜ୍ୟୋତିଷବିଦ୍ୟାରେ ଅନାବିଳ ଆସ୍ଥା ଦେଖିଲେ ଆଶ୍ଚର୍ଯ୍ୟାନ୍ୱିତ

ହେବାକୁ ହୁଏ । ତାଙ୍କର ଅନ୍ତରର ଭକ୍ତି ଦେଉଛି—"ପିତା-ମାତାଙ୍କର ଆଶୀର୍ବାଦ ଓ ଧର୍ମବଳ ନଥିଲେ କୌଣସି କ୍ଷେତ୍ରରେ ଉନ୍ନତି ଅସମ୍ଭବ ।"

ଜ୍ୟୋତିଷ ଶାସ୍ତ୍ରରେ ଅଗାଧ ବିଶ୍ୱାସ ସ୍ଥାପନ କରିବା ହେଉଛି ତାଙ୍କ ଅନେକ ନିଜସ୍ୱ ଅନୁଭୂତିର ଫଳ । ପଣ୍ଡିତ ରଘୁନାଥ ମିଶ୍ର ତାଙ୍କ ବଡ଼ଭାଇ ପୁଅ ଭାଇ ରଘୁନାଥ ମହାପାତ୍ରଙ୍କୁ କହିଥିଲେ ଯେ ସେ ମଲାବେଳକୁ ପାଣି ମୁନ୍ଦାଏ ପାଇବେ ନାହିଁ । ସତକୁ ସତ ସେ ଚନ୍ଦନ ଯାତ୍ରାରୁ ଫେରିବା ରାସ୍ତାରେ ହଇଜାରେ ଆକ୍ରାନ୍ତ ହୋଇ ବାଟରେ ଗୋଟାଏ ଗଛମୂଳେ ଶେଷନିଃଶ୍ୱାସ ତ୍ୟାଗ କରିଥିଲେ । ସେହି ଘଟଣା କେଦାରନାଥଙ୍କୁ ଗଭୀର ଭାବେ ପ୍ରଭାବିତ କରିବା ନିତାନ୍ତ ସ୍ୱାଭାବିକ କଥା ।

କେଦାରନାଥଙ୍କ ଜନ୍ମକୁଣ୍ଡଳୀରେ ତୁଳଲଗ୍ନରେ ରବି, ବୁଧ, ବୃହସ୍ପତି ଓ କେତୁ, ଦ୍ୱାଦଶ (କନ୍ୟା)ରେ ଚନ୍ଦ୍ର, ଏକାଦଶ (ସିଂହ)ରେ ଶୁକ୍ର, ଅଷ୍ଟମ (ବୃଷ)ରେ ମଙ୍ଗଳ ଏବଂ ସପ୍ତମ (ମେଷ)ରେ ଶନି ଓ ରାହୁ—'ପଞ୍ଚାନନ ଯୋଗ' ଘଟିଛି । "ବୃହତ୍ କେରଳ ବସ୍ତ୍ରାଳଣ" ଗ୍ରନ୍ଥ ମତରେ—

"ଅଶୁଭ ଫଳ ସମସ୍ତଂ ନାଶ କେମଦ୍ରୁମାଣାଂ
ସୁରପତି ପରିଣାମଂ ଯୋଗ ପଞ୍ଚାନନୋୟମ୍ ।
ସୁଲଳିତ ମୁଖବାହୁ ଶୁକ୍ଳ ଚିତ୍ରଃ ସୁବୁଦ୍ଧି
ସକଳ ଗୁଣୋପଯୁକ୍ତ ସୁନ୍ଦର ଚିତ୍ରହର୍ତ୍ତ
ଅମରୀ ନିକର ମଧ୍ୟେ ସ୍ୱର୍ଗଲୋକେ ଯଥେନ୍ଦ୍ର
ମନୁଜ ନିକର ମଧ୍ୟେ ପୂଜିତଃ ସ୍ୟାତ୍ତଥୈବ ।"

ଏହି ମତାନୁସାରେ, କେଦାରନାଥ ବାବୁ ବହୁ ସୁଗୁଣରେ ଅଧିକାରୀ ହୋଇ ସ୍ୱର୍ଗରେ ଦେବତାମାନଙ୍କ ଦ୍ୱାରା ପୂଜା ପାଉଥିବା ଦେବରାଜ ଇନ୍ଦ୍ରଙ୍କ ତୁଲ୍ୟ ପୃଥିବୀରେ ମନୁଷ୍ୟମାନଙ୍କ ଦ୍ୱାରା ପୂଜିତ ହେବାର କଥା !

# ସାର୍ଥକଜୀବନର ମହାଦୀକ୍ଷା ବୁଝିବ କିଏ ?

ସେ ବହୁଗୁଣର ଅଧିକାରୀ, ବରେଣ୍ୟ ପ୍ରତିଭାର ପ୍ରଶଂସକ—ଏହା ନିଃସନ୍ଦେହ । କିନ୍ତୁ ଉତ୍କଳର ଯଶଗାନ ଲାଗି ଉତ୍କଳୀୟ ଇତିହାସ ଓ ସଂସ୍କୃତିକୁ ଶକ୍ତି ଯୋଗାଇବା ଦିଗରେ ତାଙ୍କର ଯେଉଁ ଅବଦାନ, ତାର ପ୍ରତିଦାନରେ ଏ ଜାତି ତାଙ୍କୁ ଦେଇଛି କ'ଣ ? ୧୯୭୪ ମସିହାରେ ରାଜ୍ୟ ସାହିତ୍ୟ ଏକାଡେମୀ ପକ୍ଷରୁ ଦିଆଯାଇଥିବା ସମ୍ମାନ ଓ ୧୯୮୧ରେ ଉତ୍କଳ ପାଠକ ସଂସଦ ତରଫରୁ ପ୍ରଦତ୍ତ ମାନପତ୍ର କଣ ତାଙ୍କଲାଗି ଯଥେଷ୍ଟ ? ଏହା କଣ କେବଳ ପୋଥି-ପଥରନାଥ କେଦାରନାଥ-ବାବୁଙ୍କର ପ୍ରତିଭାର ଉପଯୁକ୍ତ ମୂଲ୍ୟାୟନ ?

ଏଥିପାଇଁ ତାଙ୍କ ମନରେ ହୁଏତ କ୍ଷୋଭ ଜନ୍ମୁଥିବ —"ମୁଁ ଓଡ଼ିଶାରେ ଜନ୍ମ ହେଲି କାହିଁକି ?"

"ପୁଣ୍ୟ ଜନ୍ମମାଟି ପୁଣ୍ୟ ଦେବାଳୟ
ଉଛୁଳିବା ପାଇଁ କଲେ ତନୁକ୍ଷୟ
ମାନବ ଜନମ ହୁଅଇ ସଫଳ
ଏ ମହାବାକ୍ୟ କି ବୁଝିବ ଉତ୍କଳ ?"

ସ୍ୱର୍ଗତ ପଣ୍ଡିତ ଗୋପବନ୍ଧୁଙ୍କର ଏହି ମହାବାକ୍ୟକୁ ମାନ୍ୟାସ୍ପଦ କେଦାରନାଥବାବୁ ପ୍ରତ୍ୟହ ପ୍ରତି ନିଃଶ୍ୱାସ ପଶ୍ୱାସରେ ଗ୍ରହଣ କରୁଛନ୍ତି । ଆମେ ତାଙ୍କର ଦାୟାଦବର୍ଗ ହୁଏତ ତାଙ୍କ ପ୍ରତି ଉଚିତ ନ୍ୟାୟବିଚାର କରିନାହୁଁ ବା କରି ନପାରୁ; କିନ୍ତୁ ଦିନେ ନା ଦିନେ ଇତିହାସରେ ସତ୍ୟ ଉଦ୍‌ଘାଟିତ ହେବ ।

"ମହାତ୍ମା ସାଧନ ମହାତ୍ମା କିଷଣ
ନ ଯାଏ ଜଗତେ କେବେ ଅକାରଣ ।"



# ଶିଳ୍ପୀଗୁରୁ ଜଗନ୍ନାଥ ମହାପାତ୍ର

* ଶ୍ରୀ ଗୋକୁଳାନନ୍ଦ ଦାସ

## ପ୍ରାକ୍ କଥନୀ

ଗୋଟିଏ ଦେଶ ବା ଜାତି ନିଜକୁ ଅନ୍ୟ ନିକଟରେ ପରିଚିତ କରିପାରେ କେବଳ ମାତ୍ର ନିଜର ସାହିତ୍ୟ, ସଂସ୍କୃତି, ଚିତ୍ରକଳା ଓ ଶିଳ୍ପ ସ୍ଥାପତ୍ୟ ମାଧ୍ୟମରେ । ଯେଉଁ ଦେଶ ଯେତେ ପରିମାଣରେ କଳାର ଉତ୍କର୍ଷତା ଅର୍ଜନ କରିଥାଏ ସେ ତଦନୁଯାୟୀ ସେହି ଅନୁପାତରେ ବିଶ୍ୱ-ଦରବାରରେ ପୂଜିତ ହୁଏ । ଦେବଲୀଳା ଭୂମି ଭାରତବର୍ଷରେ ଓଡ଼ିଶା ଆମର ଏକ ମନ୍ଦିରମାଳିନୀ ରାଜ୍ୟ । ଅତୀତରେ ରାଜା ମହାରାଜା-ମାନେ ନିଜର ଅଭୀଷ୍ଟ ସିଦ୍ଧି ନିମିତ୍ତ ରାଜ୍ୟର ବିପୁଳ ଅର୍ଥ ବ୍ୟୟକରି ବହୁ ଦେବଦେବୀଙ୍କ ମନ୍ଦିର ନିର୍ମାଣ କରିଥିଲେ ।

ଶିଳ୍ପୀ, କଳାକାର ଓ ସାହିତ୍ୟିକମାନଙ୍କୁ ନାନା ଉପାୟରେ ଉତ୍ସାହିତ କରିବା ସେତେବେଳକାର ରାଜା ମହାରାଜାଙ୍କର କେବଳ ଯେ ଏକ ସ୍ୱାଭାବିକ ପ୍ରବୃତ୍ତି ଥିଲା ତାହା ନୁହେଁ, ବରଂ ଏହା ଥିଲା ରାଜତ୍ୱର ଏକ ମହନୀୟ ଗରିମା । କେତେ ଯେ ସ୍ରଷ୍ଟା ସେତେବେଳେ ଏମାନଙ୍କ ଅନୁଗ୍ରହରେ ଓଡ଼ିଆ ସାହିତ୍ୟ ତଥା ଶିଳ୍ପ କଳାର ଉନ୍ନତି ସାଧନ କରିଛନ୍ତି, ତା'ର ସୀମା ନାହିଁ କି ପଟାନ୍ତର ମଧ୍ୟ ନାହିଁ । ପ୍ରାଚୀନ ଉତ୍କଳର କଳା ଗୌରବ, ଐତିହ୍ୟ ଓ କୀର୍ତ୍ତି ସାରା ବିଶ୍ୱରେ ସୁପ୍ରସିଦ୍ଧ । ନିଃସନ୍ଦେହରେ ପ୍ରକାଶ କରି ଯାଇ ପାରେ—ଏକଦା ଏହା ସଂଭବ ହୋଇ ପାରିଥିଲା ଓଡ଼ିଆ ଶିଳ୍ପୀର ନିହାଣମୁନ ଓ ତୁଳୀର ସାହାଯ୍ୟରେ । ଶିଳ୍ପ ଭାସ୍କର୍ଯ୍ୟ ସମୃଦ୍ଧ ଉତ୍କଳ ଭୂମିରେ ସେ କାଳର ବହୁ ଶିଳ୍ପୀମାନଙ୍କ ଦାୟାଦରୂପେ ଏ ଓଡ଼ିଶାମାଟିରେ କେତେ ଯେ ଓଡ଼ିଆ

ଶିଳ୍ପୀ ଜନ୍ମନେଇ ମୃତ୍ୟୁ ବରଣ କଲେଣି, ତାହାର ହିସାବ ନାହିଁ । ସେହି ପୂର୍ବ ପୁରୁଷମାନଙ୍କ ସୂକ୍ଷ୍ମ ନିହାଣ ମୁନରେ ପ୍ରସ୍ତରଖୋଦେଇ ମୂର୍ତ୍ତି ଓ ତୁଳୀ ଭିଙ୍ଗର କଳ୍ପନା ସେମାନଙ୍କୁ ଉଜ୍ଜୀବିତ କରି ଅମରତ୍ୱ ଲାଭ କରାଇ-ବାରେ ସହାୟତା କରି ପାରିଚି । ସେହି ଭୁଙ୍ଗ ଶିଳ୍ପୀଙ୍କ ଗୌରବରେ ଦେଶ ମାତୃକା ଆଜ ନିଜକୁ ଗୌରବାନ୍ୱିତ ମନେକରେ ।

ଉତ୍କଳରେ ସେ କାଳର ସ୍ୱର୍ଣ୍ଣ-ଶିଳ୍ପୀମାନଙ୍କ ଦାୟାଦ ରୂପେ ଏ ଯୁଗରେ ଏହି ଓଡ଼ିଶା ମାଟିରେ ପୁରୀ ଜିଲ୍ଲାର ଚନ୍ଦନପୁର ନିକଟସ୍ଥ ଏକ କ୍ଷୁଦ୍ର ପଲ୍ଲୀ ରଘୁରାଜପୁରରେ ୧୯୧୯ ମସିହା ଅକ୍ଟୋବର ୧୦ ତାରିଖ ଦିନ ଜନ୍ମ ଗ୍ରହଣ କରି ଥିଲେ ସ୍ୱନାମଧନ୍ୟ ପଟ୍ଟଚିତ୍ର ଶିଳ୍ପୀ ଜଗନ୍ନାଥ ମହାପାତ୍ର ।

## କପାଳଲିଖନ କେ କରିବ ଆନ

ବିଶ୍ୱ ବିଖ୍ୟାତ ଶିଳ୍ପୀ ପିକାସୋ ଯେପରି ଜନୈକ କଳା ଶିକ୍ଷକଙ୍କ ସନ୍ତାନ ଥିଲେ, ଶିଳ୍ପୀ ଜଗନ୍ନାଥ ମଧ୍ୟ ପୁରୀର ଜଣେ ସ୍ୱନାମ-ଧନ୍ୟ ଶିଳ୍ପୀ ସ୍ୱର୍ଗୀୟ ଆନନ୍ଦ ମହାପାତ୍ରଙ୍କର ଦ୍ୱିତୀୟ ପୁତ୍ର । ଶିଳ୍ପୀଙ୍କୁ ମାତ୍ର ଦୁଇବର୍ଷ ବୟସ ବେଳେ ମମତାମୟୀ ମାତା କୁନ୍ତୀଦେବୀ ଇହଲୀଳା ସମ୍ବରଣ କରିଥିଲେ । ସେତେବେଳେ ବଡ଼ ଭାଇ ଦାମୋଦର ମାତ୍ର ସାତ ବର୍ଷର ଶିଶୁ । ବିଧିର ବିଧାନ । ପରିସ୍ଥିତି ଦୃଷ୍ଟେ ପିତା ଆନନ୍ଦ ପୁନର୍ବିବାହ କରିଥିଲେ ଅନ୍ନପୂର୍ଣ୍ଣାଙ୍କୁ ସନ୍ତାନଦ୍ୱୟଙ୍କ ଯତ୍ନ ନେବାର ଅଭିଳାଷ ନେଇ । ଉକ୍ତ ବିମାତାଙ୍କ ଉଦରରୁ ଜନ୍ମ ହୋଇଥିଲେ ଉଦ୍ଧବ, ଗୋପୀ ଏବଂ ଏକମାତ୍ର ଅଳିଅଳୀ କନ୍ୟା ଲବଣୀ । ପିତାଙ୍କର ଜୀବନଯାତ୍ରା ସ୍ୱଚ୍ଛଳ ଅବସ୍ଥାରେ ନ ଥାଏ । ଜଣେ ପାରମ୍ପରିକ ଚିତ୍ର ଓ ମୃଣ୍ମୟ ଶିଳ୍ପୀଭାବେ ଜୀବିକାର୍ଜନ କରୁଥାନ୍ତି । ଏକ ମାତ୍ର ଅର୍ଜନକ୍ଷମ ବ୍ୟକ୍ତିର ସ୍ୱଳ୍ପ ଆୟ ମଧ୍ୟରେ ଏତାଦୃଶ ପରିବାରଟିକୁ ଚଳାଇବା ତାଙ୍କ ପକ୍ଷରେ ଅତୀବ କଷ୍ଟସାଧ୍ୟ ହୋଇ ପଡ଼ନ୍ତି ! ନିତ୍ୟ ବ୍ୟବହାର୍ଯ୍ୟ ପଦାର୍ଥର ମୂଲ୍ୟ ବୃଦ୍ଧି ହେତୁ ଦେଖାଦେଲା ଆର୍ଥିକ ଦୁରବସ୍ଥା । ଫଳରେ ସାଧାରଣ ଜୀବନ ଯାପନରେ ବ୍ୟତିକ୍ରମ ଘଟି ଜୀବନ ତାଙ୍କର ହୋଇ ଉଠିଲା ଅତ୍ୟନ୍ତ ଦୁର୍ବିସହ । ଏପରିକି

କେତେଦିନ ମଧ୍ୟ ଉପବାସ ରହିବାକୁ ପଡ଼ୁଛି, ହେଲେ ମନୋବଳ ଥିଲା ଦୃଢ । ହାତର ରୁଚି କେବେହେଲେ ଶିଥିଳ ହୋଇ ନ ଥିଲା— ଅପରିମିତ ଦରିଦ୍ରତା ସତ୍ତ୍ୱେ ମଧ୍ୟ ।

ଏହି ଦୁର୍ଦ୍ଦିନ ମଧ୍ୟରେ ସଂସାର ପରିପୋଷଣ କରିବା ଯାହାଙ୍କ ପକ୍ଷରେ ଦୁଃସାଧ୍ୟ ବ୍ୟାପାର, ସେ ବା' ପିଲାଙ୍କର ଶିକ୍ଷାପ୍ରତି ଦୃଷ୍ଟି ଦେଇ ପାରିବେ କିପରି ? ତଥାପି ଜଗନ୍ନାଥ ଗ୍ରାମ ଚାଟଶାଳୀରେ ପ୍ରବେଶ କଲେ । ମାତ୍ର ଆର୍ଥିକ ଅସ୍ୱଚ୍ଛଳତା ତାଙ୍କୁ ସେ ଦିଗରେ ଅଗ୍ରଣୀ ହେବାକୁ ସୁଯୋଗ ଦେଲା ନାହିଁ । ଅପର ପକ୍ଷରେ ବିମାତାଙ୍କ ନିର୍ଯ୍ୟାତନା ତାଙ୍କ ପକ୍ଷରେ ଏକ ଅନ୍ତରାୟ ସୃଷ୍ଟି କରିଥିଲା । ଫଳରେ ପିତାଙ୍କର ଚକ୍ଷୁଶୂଳ ହୋଇ ତାଙ୍କୁ ଗୃହ ତ୍ୟାଗୀ ହେବାକୁ ପଡ଼ିଥିଲା ।

୧୯୭୨ ମସିହାର ଘଟଣା । ଓଡ଼ିଶୀ ରାସଲୀଳା ପ୍ରବର୍ତ୍ତକ ପ୍ରଭୁପାଦ ମୋହନ ସୁନ୍ଦର ଦେବ ଗୋସ୍ୱାମୀ ପୁରୀ ଜିଲ୍ଲାର ବିଭିନ୍ନ ସ୍ଥାନ ଭ୍ରମଣ କରି ରାସରେ ଅଭିନୟ କରିବା ନିମନ୍ତେ ଇଚ୍ଛୁକ କିଶୋର ଶିକ୍ଷାର୍ଥୀ-ମାନଙ୍କୁ ସଂଗ୍ରହ କରୁଥାନ୍ତି । ଘଟଣାକ୍ରମେ ରଘୁରାଜପୁରରେ ଯାଇ ପହଞ୍ଚିଲେ । ତାଙ୍କରି ଅନୁରୋଧ କ୍ରମେ ଉକ୍ତଗ୍ରାମର କେତେକ କୋମଳ-ମତି ବାଳକ ଯୋଗ ଦେଲେ ତାଙ୍କଦ୍ୱାରା ପରିଚାଳିତ ଅପେରାରେ । ତନ୍ମଧ୍ୟରେ ଜଗନ୍ନାଥ ଥିଲେ ଅନ୍ୟତମ । ପାରିବାରିକ ଅନ୍ତଃଜ୍ୱାଳା ନିର୍ବାପନ ନିମନ୍ତେ ପିତାଙ୍କ ଅଗ୍ରଜ ସଦ୍ୱାନ୍ତ ଗୋସ୍ୱାମୀଙ୍କ ଅପେରାରେ ଯୋଗ ଦେବାକୁ ଅନୁମତି ପ୍ରଦାନ କରିଥିଲେ । ସେହି ଦିନଠାରୁ ଜଗନ୍ନାଥ ଗୁରୁ-ଗୃହରେ ଶିକ୍ଷା ଆରମ୍ଭ କରିଥିଲେ ନୃତ୍ୟ, ସଙ୍ଗୀତର ତାଳ ଓ ମାନ ସମ୍ପର୍କରେ । ଈଶ୍ୱର ଦତ୍ତ ପ୍ରତିଭାକୁ ସମ୍ବଳକରି ନିଜ ସାଧନା ପଥରେ ସେ ଆଗେଇ ଗଲେ କଳାର ପ୍ରବହମାନ ସ୍ରୋତରେ କାଳ ବିଳମ୍ବ ନ କରି । ସଙ୍ଗୀତର ସ୍ୱର ମୂର୍ଚ୍ଛନା ମଧ୍ୟରେ ସେ ନିଜକୁ ହଜାଇ ଦେଇ ଥିଲେ, ସକଳ ଦୁଃଖ ଓ ଯନ୍ତ୍ରଣାକୁ ଭୁଲି ଯାଇ । ତହିଁରୁ ମିଳୁଥିଲା ଅଫୁରନ୍ତ ଆନନ୍ଦ । ଶ୍ରୀକୃଷ୍ଣ ଲୀଳା ପ୍ରେମରେ ହୋଇ ଉଠିଲେ ଆତ୍ମହରା ଓ ଭୁଲିଗଲେ ମୋହମାୟା ଘେରା ପାର୍ଥିବ ସଂସାର । ସେତେବେଳେ ସେ ବିଭିନ୍ନ ଭୂମିକାରେ ଅଭିନୟ କରି ସୁନାମ ଅର୍ଜନ

କରି ଚାଲିଥିଲେ, 'ବାଲ୍ୟଲୀଳା', 'ଶରତରାସ' ଓ 'ମଥୁରାମଙ୍ଗଳ' ଇତ୍ୟାଦିରେ । ସେ ଏକାଧାରରେ ଗାୟକ ଓ ଅଭିନେତା ହିସାବରେ କୃତିତ୍ୱ ପ୍ରଦର୍ଶନ କରି ଦର୍ଶକମାନଙ୍କର ପ୍ରିୟଭାଜନ ହେବାର ଗୌରବ ଅର୍ଜନ କରିଥିଲେ । କ୍ରମେ ଅନୁଷ୍ଠାନଟିରେ ଅର୍ଥାଭାବ ଦେଖାଦେଲା । ଫଳରେ ଗୋସ୍ୱାମୀଙ୍କ ନିର୍ଦ୍ଦେଶକ୍ରମେ ସଂକୀର୍ତ୍ତନ ନେଇ ପୁରୀ ସହରର ବିଭିନ୍ନ ମଠାଧୀଶ ଏବଂ ପୁରୀର ଗଜପତି ମହାରାଜାଙ୍କ ଠାରୁ ଭିକ୍ଷା ଗ୍ରହଣ କରି ବଞ୍ଚେଇବାକୁ ପଡ଼ିଥିଲା ଉକ୍ତ ମହତ୍ ଅନୁଷ୍ଠାନଟିକୁ । ବିଧିର ବିଧାନ କେ ଖଣ୍ଡିବ ଆନ । ସମସ୍ତ ଉଷ୍ମତା ଓ ଅନୁଭୂତିରେ ଏକ ଦୀର୍ଘ ପରିଚ୍ଛେଦ ଟେକି ଯାଇଥିଲା । ତାଙ୍କୁ ପିତାଙ୍କ ନିର୍ଦ୍ଦେଶ କ୍ରମେ ସ୍ୱଗୃହକୁ ପ୍ରତ୍ୟାବର୍ତ୍ତନ କରିବାକୁ ପଡ଼ିଥିଲା ୧୯୩୫ ମସିହାରେ, ସେତେବେଳେ ଅନାହୃତ ଉପେକ୍ଷିତ କୈଶୋରର ନିଷ୍କରୁଣ ଚପଳସ୍ମୃତି ଅପସରି ଯାଇଥିଲା ନିଜ କୌଳିକ ବୃତ୍ତିକୁ ସମ୍ବଳକରି ଚିତ୍ରକଳା ଚର୍ଚ୍ଚାରେ ଆକାଂକ୍ଷା ଦେଲା । ତଥାପି ତରୁଣର ଚାପଲ୍ୟ ନେଇ ଗ୍ରାମରେ ଥିବା ପୁରାତନ ଯାତ୍ରାଦଳରେ ସହଯୋଗ କରିଥିଲେ । ଏପରି କି କଳାର ପୂଜାରୀ ଭାବେ ନିଜ ପ୍ରତିଭାର ପରିଚୟ ଦେଇ ବ୍ୟାବସାୟିକ ଭିତ୍ତିରେ ଉକ୍ତ ଯାତ୍ରାଦଳକୁ ସେ ଖୁବ୍ ଦକ୍ଷତାର ସହିତ ପରିଚାଳନା କରିଥିଲେ ଅପରିପକ୍ୱ ବୟସରେ ମଧ୍ୟ । କଳା ଓ ସାହିତ୍ୟର ଆତ୍ମା ଅପରିବର୍ତ୍ତିତ ହେଲେହେଁ ଅଙ୍ଗ ପରିବର୍ତ୍ତନର ଚମତ୍କାରିତା ପ୍ରତ୍ୟେକ ଯୁଗରେ ରୁଚିକୁ ଅଙ୍ଗୀଭୂତ ଓ ଆତ୍ମୀଭୂତ କରିଥାଏ । କିଶୋର ପ୍ରାଣରେ ଚଳଚଞ୍ଚଳ ନାଟ୍ୟପ୍ରବାହ ଧୀରେ ଧୀରେ ମନ୍ଥର ହୋଇ କେଉଁ କୁହୁକମୀର ମାୟା ସ୍ପର୍ଶରେ ତାଙ୍କୁ ଶିଳ୍ପୀରେ ପରିଣତ କଲା, ତାହା କହିବା ସମ୍ଭବପର ନୁହେଁ । କ୍ରମେ ପିତା ଆନନ୍ଦ ଓ ଜ୍ୟେଷ୍ଠ-ଭ୍ରାତା ଦାମୋଦରଙ୍କର ପ୍ରେରଣା ଓ ପ୍ରଚେଷ୍ଟାରେ ଅନୁପ୍ରାଣିତ ହୋଇ ଶିଳ୍ପୀକୁଳର ଗୌରବ ଉଜ୍ଜ୍ୱଳ କରିଥିଲେ ପରବର୍ତ୍ତୀକାଳରେ । ତତ୍ସଙ୍ଗେ ସଙ୍ଗେ ତାଙ୍କର ଜନୈକ ଦୂର ସଂପର୍କୀୟ ଜ୍ୟେଷ୍ଠଭ୍ରାତା ହାଡିବନ୍ଧୁ ମହାପାତ୍ରଙ୍କଠାରୁ ରାଜମିସ୍ତ୍ରୀ ଓ ମୃଣ୍ମୟମୂର୍ତ୍ତି ଇତ୍ୟାଦିର ଗଠନ ପ୍ରଣାଳୀ ଶିକ୍ଷା କରିଥିଲେ ।

ଆଜକୁ ପ୍ରାୟ ଦ୍ୱିଶହ ବର୍ଷ ତଳର କଥା । ଶିଳ୍ପୀ ଜଗନ୍ନାଥଙ୍କର ପୂର୍ବପୁରୁଷମାନେ ତଦାନୀନ୍ତନ ଗଡ଼ଜାତ ରାଜ୍ୟ 'ବାମଣ୍ଡା'

ବା 'ବାମଣ୍ଡା'ରୁ ଉଠିଆସି ଶ୍ରୀ ପୁରୁଷୋତ୍ତମ କ୍ଷେତ୍ରରେ ଅବସ୍ଥାନ କରିଥିଲେ । ପୂର୍ବେ ରାଜା ମହାରାଜାମାନେ ଚିତ୍ରକଳା ଓ ସ୍ଥାପତ୍ୟର ଅନୁରାଗୀ ଥିଲେ, ତେଣୁ ପୁରୀରେ ରହି ଶ୍ରୀ ଜଗନ୍ନାଥଙ୍କ ପଟଚିତ୍ର ନିର୍ମାଣ କରି ଯାତ୍ରୀମାନଙ୍କୁ ବିକ୍ରୟ କରି ଜୀବିକାର୍ଜନ କରୁଥିଲେ । ପୁରୀର କୁଣ୍ଡେଇବେଣ୍ଟସାହି, ବାସେଳୀସାହି, ଓ ଚିତ୍ରକାର ସାହିରେ ମଧ୍ୟ ତାଙ୍କ ବଂଶଧରମାନେ 'ଚିତ୍ରକାର' ରୂପେ ପରିଚିତ । କାଳକ୍ରମେ ତାଙ୍କର ବଂଶ ବିଶେଷ କ୍ରମବର୍ଦ୍ଧିଷ୍ଣୁ ପରିବାର ସହ ବିଭିନ୍ନ ସ୍ଥାନରେ ସ୍ୱ ସ୍ୱ ସ୍ଥାନ ଅଧିକାର କଲେ ଜୀବନ ଧାରଣର ମାର୍ଗ ଅବଲମ୍ବନ କରି । ପୁରୀ ସହରର ଅନତିଦୂରରେ ରଘୁରାଜପୁର (ଚନ୍ଦନପୁର ନିକଟସ୍ଥ) ଓ ଦାଣ୍ଡସାହି (ବୀର ପ୍ରତାପପୁର) ନାମକ ଦୁଇଟି ସ୍ଥାନରେ ପୁନର୍ବସତି ଲାଭ କଲା ଚିତ୍ରକାରମାନଙ୍କର ସେହି ବଂଶଧରମାନଙ୍କ ସାଥିରେ ଧରି । ପୁଣ୍ୟତୋୟା ଭାର୍ଗବୀ ନଦୀ କୂଳରେ ପୂର୍ବଦିଗକୁ ନାରିକେଳ, ଆମ୍ବ, ପୁନଙ୍ଗ ଓ ବଂଶବୃକ୍ଷ ପରିବେଷ୍ଟିତ ଏବଂ ଦେବଦେବୀ ମନ୍ଦିର ବିମଣ୍ଡିତ କ୍ଷୁଦ୍ର ପଲ୍ଲୀରେ ଏକ ଶାନ୍ତ ପରିବେଶ ମଧ୍ୟରେ ଜନବସତି ଗଢି ଉଠିଲା "ରଘୁରାଜ ପୁର" ।

## ସିଦ୍ଧି ଓ ସାଧନା / ଏଯୁଗର ଧରମା :

ପୁରୀ ବାସେଳୀସାହି କଣାପୁରୀଆଗଳିର ଶିଳ୍ପୀ କୃଷ୍ଣଚନ୍ଦ୍ର ମହାରଣାଙ୍କର ନିଧି ଓ ଗୋବିନ୍ଦ ନାମକ ଦୁଇଟି ପୁତ୍ର ଥିଲେ । କୃଷ୍ଣଚନ୍ଦ୍ର ପୁରୀରୁ ଉଠି ଆସିଲେ ରଘୁରାଜପୁରକୁ ଓ ଆସିଲାବେଳେ ସାଥିରେ ଆଣିଥିଲେ ଦୁର୍ଗାଙ୍କର ଚିତ୍ର । ପରବର୍ତ୍ତୀ ସମୟରେ ସେ ନିଜେ ମହିଷାମର୍ଦ୍ଦିନୀ ଦୁର୍ଗାଙ୍କର ଦଶଭୁଜା ମୂର୍ତ୍ତି ନିର୍ମାଣ କଲେ ପ୍ରତ୍ୟେକ ବର୍ଷ (ଦଶ ଭୁଜ ବିଶିଷ୍ଟା ହୋଇଥିବାରୁ 'ଦଶଭୁଜା' ନାମରେ ବିଦିତା ।) ବଂଶାନୁକ୍ରମିକ ନିଧି ମହାରଣା ମଧ୍ୟ ମୂର୍ତ୍ତି ଗଠନ କଲେ । କିନ୍ତୁ ନିଧିଙ୍କ ପୁତ୍ର ବୃନ୍ଦାବନ ମହାରଣା ମୂର୍ତ୍ତି ଗଠନ କରିବାରେ ଅସମର୍ଥ ଥିଲେ । ଦିନେ ଉକ୍ତ ଗ୍ରାମର ଈଶ୍ୱର ମହାରଣାଙ୍କ କନ୍ୟାକୁ ଦର୍ଶନ ଦାନ ଦେବୀ ପ୍ରସନ୍ନ ହୋଇ ଆଦେଶ କଲେ : କେବଳ ମୋହର ବଂଶଧର-ମାନଙ୍କ ଦ୍ୱାରା ନିର୍ମିତ ହୋଇ ପୂଜା ପାଇବି । ଅନ୍ୟ ଯିଏ ମୋ ଶରୀର ସ୍ପର୍ଶ କରିବ ତାକୁ ଅପୂରଣୀୟ କ୍ଷତି ସହ୍ୟକରିବାକୁ ପଡ଼ିବ । ଭକ୍ତ

ସବାପନ୍ନ ଭକ୍ତଙ୍କ ହୃଦୟ ଭୟ ଓ ଭାବନାରେ ଉଦ୍‌ବେଳିତ ହୋଇ ଉଠିଲା । ସବୁରି ମୁଖରେ ଗୋଟିଏ ପ୍ରଶ୍ନ : କିଏ ସେଇ ଭାଗ୍ୟବାନ ? ଯାହାଙ୍କ ହସ୍ତରେ ଦେବୀ 'ଦଶଭୂଜା' ନିର୍ମିତ ହେବେ । ତେବେ ଯାହା ହେଉ, କରୁଣାମୟୀ ମା'ଙ୍କର ଅପାରକୃପାରୁ କୃଷ୍ଣଚନ୍ଦ୍ର ମହାରଣାଙ୍କର ଭାଗିନେୟ ଆନନ୍ଦ ମହାପାତ୍ର ସର୍ବସମ୍ମତିକ୍ରମେ ବିବେଚିତ ହୋଇଥିଲେ ଉକ୍ତ ଗୁରୁଦାୟିତ୍ୱକୁ ବହନ କରିବା ନିମନ୍ତେ । ସେ ଅନେକ ପୂର୍ବରୁ କଳାକ୍ଷେତ୍ରରେ ସୁଖ୍ୟାତି ଅର୍ଜନ କରିଥିଲେ; ତେଣୁ ଉତ୍ସାହର ସହିତ ଆଗେଇ ଗଲେ ଭକ୍ତିପୂର୍ଣ୍ଣ ଭାବରେ ।

୧୯୩୭ ମସିହା । ଭାଦ୍ରବ ମାସ ଶିବ ଚତୁର୍ଦ୍ଦଶୀ ଦିନ ଶିଳ୍ପୀ ଜଗନ୍ନାଥଙ୍କର ପିତା ଆନନ୍ଦ ମହାପାତ୍ର ସ୍ୱର୍ଗାରୋହଣ କଲେ । ଏଥିପୂର୍ବରୁ ତାଙ୍କ ଜ୍ୟେଷ୍ଠଭ୍ରାତା ଦାମୋଦର ମହାପାତ୍ର କଳାକ୍ଷେତ୍ରରେ ଅବତୀର୍ଣ୍ଣ ହୋଇ ସାରିଥିଲେ । କିନ୍ତୁ ସେତେବେଳେ ଜଗନ୍ନାଥ ଥିଲେ କଳା-କ୍ଷେତ୍ରରେ ଏକ ଅପରିବିକଶିତ କଳିକା । ଘୋର ପରିତାପର ବିଷୟ— ପିତାଙ୍କ ମୃତ୍ୟୁପରେ ଶିଳ୍ପୀ ଦାମୋଦର ରାଜଯକ୍ଷ୍ମାରେ ପୀଡ଼ିତ ହେବାରୁ ସ୍ୱକୀୟ କୌଳିକ ବୃତ୍ତିରେ ବ୍ୟାଘାତ ଘଟିଥିଲା । ଫଳରେ ଆର୍ଥିକ ଅବସ୍ଥା ସୀମିତ ହେବାକୁ ଲାଗିଲା ଦିନକୁ ଦିନ । ପ୍ରକାରାନ୍ତରେ ଗୃହର ସମସ୍ତ ଦାୟିତ୍ୱ ଶିଳ୍ପୀ ଜଗନ୍ନାଥଙ୍କ ଉପରେ ନ୍ୟସ୍ତ ହୋଇ ଥିଲା ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବରେ ।

ଘଟଣାଚକ୍ରରେ ପଡ଼ି ଶିଳ୍ପୀ ହେଲେ ବିରାଟ ପରୀକ୍ଷାର ସମ୍ମୁଖୀନ । ଏଣିକି ବର୍ଷ ପରମ୍ପରାକ୍ରମେ ପ୍ରତ୍ୟେକ ବର୍ଷ ଭଳି ଦେବୀ ଦଶଭୂଜାଙ୍କ ନିର୍ମାଣ କରିବାର ଗୁରୁଦାୟିତ୍ୱ ବହନ କରିବାକୁ ପଡ଼ିଥିଲା ଜଗନ୍ନାଥଙ୍କୁ; କାରଣ ଭ୍ରାତୃଦେବ ଦାମୋଦର ଥିଲେ ରୋଗାକ୍ରାନ୍ତ । "ମାତ୍ର ଅଠର ବର୍ଷର ବାଳକ ଯାହାଠାରୁ କି କୈଶୋରର ଚପଳତା ଛାଡ଼ିନ, ସିଏ ପୁଣି ନିର୍ମାଣ କରିବ ଦେବୀ ଦୁର୍ଗାଙ୍କ ମୂର୍ତ୍ତି ?" ଏକଥା ଗ୍ରାମର ପ୍ରମୁଖଲୋକେ ପରିହାସ ଛଳରେ ନାପସନ୍ଦ କରି କହିବାକୁ ଲାଗିଲେ ଓ ଅନ୍ୟାନ୍ୟ ଶିଳ୍ପୀ କେତେଜଣ ମଧ୍ୟ ନାସିକା-କୁଞ୍ଚନ କଲେ । କିନ୍ତୁ ମହାରଣାର ବାରବର୍ଷର ଶିଶୁପୁତ୍ର ଧରମା ଯେତେବେଳେ କୋଣାର୍କର ମୁଣ୍ଡି ମାରିବାକୁ ସମର୍ଥ ହୋଇ ପାରିଲା

ଯାହାକି ବାରଶହ ବଢେଇଙ୍କ ଦ୍ୱାରା ସଂଭବ ହୋଇ ପାରି ନଥିଲା । ସେହେତେବେଳେ ଶିଳ୍ପୀ ଜଗନ୍ନାଥ ଙ୍କ ଦେବୀ ଦଶଭୁଜାଙ୍କ ମୃଣ୍ମୟ ମୂର୍ତ୍ତି କରିବା ଅସମ୍ଭବ ?! —ଏକଥା ସତେ ଯେପରି ସେମାନେ ଭୁଲି ଯାଇଥିଲେ । ହେଲେ ଶତ୍ରୁର ବିଦ୍ରୂପଭରା ଇଙ୍ଗିତ ଶିଳ୍ପୀଙ୍କୁ ନିଜ ପାଦରେ ଛିଡ଼ା ହେବାକୁ ଯୋଗେଇ ଦେଇଥିଲା ଅଦ୍ଭୁତ ପ୍ରେରଣା, ସାହସ ଓ ଶକ୍ତି ।

ଅନ୍ୟତମ ଶିଳ୍ପୀ ଗିରିଧାରୀ ମହାରଣା ଜଗନ୍ନାଥଙ୍କୁ ଯଥେଷ୍ଟ ସାହାଯ୍ୟ କରିଥିଲେ କର୍ଦ୍ଦମାକ୍ତ ପଥକୁ ଅତିକ୍ରମ କରିବାରେ । ପ୍ରଗାଢ଼ ଭକ୍ତି ଓ ଏକନିଷ୍ଠ ଚିତ୍ତରେ ଦେବୀଙ୍କ ପଦତଳେ ନିଜକୁ ସମର୍ପି ଦେଇଥିଲେ ଅଭୀଷ୍ଟ ସିଦ୍ଧି ନିମନ୍ତେ । "ମା'ର ମହିମା ହେଲେ ସବୁକିଛି ହୋଇ ପାରିବ ।" ଏଇ କେତୋଟି ଶବ୍ଦ ସତେ ଯେପରି ତାଙ୍କ କର୍ଣ୍ଣ ଗହ୍ୱରରେ ଅନୁରଣିତ ହେବାକୁ ଲାଗିଲା । 'ଭକ୍ତି' ଓ 'ଭରସା' ଦୁଇଟି ଯାକ ପରସ୍ପର ପରିପୂରକ । କରୁଣାମୟୀ ଦୁର୍ଗତିନାଶିନୀଙ୍କ ଅସୀମ କୃପାରୁ ସେ ହେଲେ ପରୀକ୍ଷାରେ କୃତକାର୍ଯ୍ୟ । ଅତି ନିଖୁଣ ଭାବେ ମୂର୍ତ୍ତି ତିଆରି କରି ଜଣେ କୁଶଳୀ କଳାକାରର ପରାକାଷ୍ଠା ଦେଖାଇ ପାରିଥିଲେ । ବିକାଶୋନ୍ମୁଖୀ ଶିଳ୍ପୀପ୍ରତିଭା ନୂତନ ସୂର୍ଯ୍ୟର ଆଲୋକରେ କଳାନୈପୁଣ୍ୟର ବୈଶିଷ୍ଟ୍ୟ ପ୍ରତିପାଦନ କଲା ।

ପରବର୍ଷ ଶ୍ରୀ ମହାପାତ୍ର ଦଶହରାକୁ ଦଶଭୁଜା ଦୁର୍ଗାଙ୍କ ମୂର୍ତ୍ତି ନିର୍ମାଣ କଲେ । ସାଧାରଣତଃ ମୂର୍ତ୍ତିର ଗଠନ ପରିପାଟୀ ଅନୁସାରେ ଆଠଟି ଭୁଜରେ ତ୍ରିଶୂଳ, ବଜ୍ର, ଗଦା, ଚକ୍ର ଇତ୍ୟାଦି ଆଠଗୋଟି ଆୟୁଧ ଏବଂ ଅନ୍ୟ ଦୁଇଟି କରରେ ଧନୁଶରରେ ଗୁଣ ଦେବାର ଏକ ମୁଦ୍ରାରେ ଆସୀନ ଥିବାର ପରିଲକ୍ଷିତ କରାଯାଏ । କିନ୍ତୁ ଜନୈକ ଶିଳ୍ପୀ ଶେଷୋକ୍ତ ପ୍ରଣାଳୀରେ ନ କରିବାକୁ ଉପଦେଶ ଦେଲେ । ତଦନୁଯାୟୀ ତାଙ୍କର ନିର୍ଦ୍ଦେଶକ୍ରମେ ଏକ ହସ୍ତରେ ଧନୁ ଓ ଅପର ହସ୍ତରେ ଶର ଥିବାର ଏକ ମୂର୍ତ୍ତି ଗଠନ କଲେ । ଯଥାରୀତି ଦେବୀଙ୍କର ପୂଜାଅର୍ଚ୍ଚନା ପରେ ଜଳରେ ବିସର୍ଜନ କରାଗଲେ । ଠିକ୍ ଏହାର ଦୁଇ ଦିନ ପରେ ଶିଳ୍ପୀ ଜଗନ୍ନାଥ ଏକ ଦୁଃସ୍ୱପ୍ନ ଦେଖିବାକୁ ପାଇଲେ । ତର୍ଜ୍ଜିଆରେ ଦିନ ପ୍ରଭାତରେ ତାଙ୍କର ଜଣେ ଅମ୍ଳୀୟ ମାଉସୀଙ୍କୁ ଗତ

ରଷିର ସମସ୍ତ ବୃତ୍ତାନ୍ତ କହିବାକୁ ଲାଗିଲେ : ମେଳଣ ପଡ଼ିଆରେ ଦେବୀ ଦଶଭୂଜାଙ୍କ ମୂର୍ତ୍ତି ଅତ୍ୟନ୍ତ ବିଭତ୍ସପୂର୍ଣ୍ଣ ଦେଖା ଯାଉ ଥିଲେ କାରଣ ଯେଉଁ ଦୁଇଟି ହସ୍ତ ଏବଂ ଭଗ୍ନ ରୂପରେ ଗଢ଼ା ଯାଇଥିଲା ତାହା ସତେ ଯେପରି କୁଷ୍ଠ ରୋଗରେ ଆକ୍ରାନ୍ତ ହୋଇଥିବା ରୋଗୀର ହସ୍ତ ସଦୃଶ ଦିଶୁଥାଏ । ଇସ୍, ସତରେ କେଡ଼େ କଦାକାର ! ଦୋଷ ତ୍ରୁଟି କିଛି ରହିଗଲାକି ଆଉ ? —ଏହା କହି ସାରିବା ପରେ ଜଗନ୍ନାଥ ହଠାତ୍ ନିଜର ସଂଜ୍ଞାହରାଇ ବସିଲେ । କାଳବିଳମ୍ବ ନକରି ତାଙ୍କର ଚିକିତ୍ସା କରାଗଲା, ହେଲେ ଉନ୍ନତିର କୌଣସି ଲକ୍ଷଣ ଦେଖାଗଲାନାହିଁ । ପରିଶେଷରେ ଦେବୀଙ୍କର ପୂଜକ ଭଗବାନ ଚକ୍ରବର୍ତ୍ତୀ ଆସି ମହାମାୟୀ ଦଶଭୂଜାଙ୍କୁ ଧୂପ, ଦୀପ ଓ ଫଣା ଇତ୍ୟାଦି ଦେବାରୁ ଶିଳ୍ପୀ ନିଜର ସଂବିତ୍ ଫେରି ପାଇଲେ । ସବୁରି ମୁଖରେ ହରହର ଝଂକାର । ସେହି ଦିନରୁ ଶିଳ୍ପୀ ଜଗନ୍ନାଥଙ୍କର ମନରେ ବିଶ୍ୱାସ ହେଲା ସର୍ବଶକ୍ତିମୟୀ ଜଗତ୍ଜନନୀ ଦେବୀ ଦଶଭୂଜାଙ୍କୁ ସ୍ମରଣ କଲେ ଅସାଧ୍ୟ ମଧ୍ୟ ସାଧନ ହୋଇ ପାରିବ । ଧର୍ମ ବିଶ୍ୱାସର ପରିଧି ମଧ୍ୟରେ ରହି ଚତୁଃପାର୍ଶ୍ୱକୁ ଦୃଷ୍ଟି ନିକ୍ଷେପ କରି ତାଙ୍କର ଜଣେ ବରପୁତ୍ର ବୋଲି ନିଜକୁ ମନେକଲେ । ସେହିଦିନ ଠାରୁ ସେ ପୂର୍ଣ୍ଣତା ଲାଭ କରି ସାଧନା ପଥରେ ଆଗେଇ ଗଲେ ଦୀପ୍ତିମନ୍ତ ପ୍ରତିଭାର ସ୍ୱାକ୍ଷର ବହନ କରି । କିନ୍ତୁ ସୃଷ୍ଟିର ନିୟମାନୁସାରେ ପ୍ରଥମେ କୃଚ୍ଛ୍ର ସାଧନା ବିନା ସିଦ୍ଧି ଯେ ଅସମ୍ଭବ ! ତେବେ, ଏହି ଶିଳ୍ପୀଙ୍କ କ୍ଷେତ୍ରରେ ଏହାର ବ୍ୟତିକ୍ରମ ଦେଖାଦେଇଥିଲା, ତାହାହିଁ ହେଉଛି ଜୀବନରେ ପ୍ରଥମ ସିଦ୍ଧି ଓ ପରେ ସାଧନା ।

## ଦୁଃଖର ପରିସମାପ୍ତି କେଉଁଠି ?

ଦୁଃଖର ପରିସମାପ୍ତି ନାହିଁ । ଏହା ଆବହମାନ କାଳରୁ ମାନବର ଚୀରନ୍ତନ ସାଥିରୂପେ ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ଓତଃପ୍ରୋତଃ ଭାବେ ସଂଶ୍ଳିଷ୍ଟ । "ମର୍ତ୍ତ୍ୟ ମଣ୍ଡଳେ ଦେହବହି, ଦେବତା ହୋଇଲେ ମରଇ" ଠିକ୍ ବର୍ଷକ ପରେ ବିପର୍ଯ୍ୟସ୍ତ ଦେଖା ଦେଇଥିଲା ଶିଳ୍ପୀ ଜଗନ୍ନାଥଙ୍କ ଜୀବନରେ । ୧୯୩୮ ମସିହାରେ ଅଗ୍ରଜ, ଶିଳ୍ପୀ ଦାମୋଦର-ଙ୍କର ମାତ୍ର ୨୪ ବର୍ଷ ବୟସରେ ଅକାଳବିୟୋଗ ଘଟିଥିଲା । ଉକ୍ତ ଘଟଣାର ୧୨ ଦିନ ପରେ ବିଧବା ଭାଉଜଙ୍କ ଔରସରୁ ଗୋଟିଏ ପୁତ୍ର

ସନ୍ତାନ ଜାତ ହୋଇ ଅକାଳରେ ଝଡ଼ି ପଡ଼ିଲା ଲଙ୍ଗଣିଜଳୀ ଭଳି । ଗୋଟିଏ ପରେ ଗୋଟିଏ ଦୁଃଖର ପାହାଡ଼ ମଥାରେ ବହନ କରି ଜଗନ୍ନାଥଙ୍କୁ କର୍ତ୍ତବ୍ୟ ପଥରେ ଆଗେଇ ଯିବାକୁ ପଡ଼ୁଥିଲା ଅବିଚଳିତ ଭାବେ । ପରିବାରର ସମସ୍ତ ଦାୟିତ୍ୱ ତାଙ୍କୁ ବହନ କରିବାକୁ ପଡ଼ୁଥିଲା ଅତି ନିର୍ଲିପ୍ତ ଭାବରେ । ସେତେବେଳେ ପଞ୍ଚଶବର ବୃତ୍ତିଦା ଆଦୌ ନ ଥିଲା କହିଲେ ଚଳେ । ତେଣୁ ଶିଳ୍ପୀ ମୂର୍ତ୍ତି ଗଠନ ଓ ରାଜମିସ୍ତ୍ରୀକାର୍ଯ୍ୟ ଇତ୍ୟାଦି କରି ପରିବାରବର୍ଗଙ୍କୁ ଭରଣ ପୋଷଣ କଲେ । କାରଣ ଉକ୍ତ ଛ'ଜଣିଆ ପରିବାରଟିରେ ସେ ହିଁ ଥିଲେ ଏକମାତ୍ର ରୋଜଗାରକ୍ଷମ ବ୍ୟକ୍ତି ।

ସେତେବେଳେ ସମାଜରେ ବିଧବା-ବିବାହର ପ୍ରଚଳନ ନ ଥିଲା । ବିଧବା ଭଉଜଙ୍କୁ ପିତ୍ରାଳୟୁ ଫେରିଯିବାକୁ ତାଙ୍କର ପିତାମାତା ଓ ହିତାକାଂକ୍ଷୀ ବନ୍ଧୁଗଣ ଇଚ୍ଛୁକ ଥିଲେ । ହେଲେ, ମାତ୍ର ଅଠରଟି ବସନ୍ତ ଅତିକ୍ରମ କରିଥିବା ବୈଧବ୍ୟ ବେଦନାବିଧୁରା ଯୁବତୀ 'ହୃଦୟମଣି'ଙ୍କ ହୃଦୟ ଅନ୍ୟତ୍ର ଦିବାକୁ ଇଚ୍ଛା ପ୍ରକାଶ ନ କରି ବଦ୍ଧପରିକର ଭାବେ ସେ ନିଜସ୍ୱ ମତ ବ୍ୟକ୍ତ କରି ନାସ୍ତିବାଣୀ ଶୁଣାଇ ଥିଲେ । ଶ୍ୱଶୁରାଳୟକୁ ନିଜର ଧବସ୍ୱର୍ଗ ମନେ କରି ଚିରଦିନ ଦାସୀତ୍ୱ ଗ୍ରହଣ କରିବା ଅପେକ୍ଷା ଅନ୍ୟତ୍ର ରାଜରାଣୀ ହେବାକୁ ନାପସନ୍ଦ କଲେ ବିନା-ଦ୍ୱିଧାରେ । ଯୁବକ ଶିଳ୍ପୀ ଓ ସମାଜସଂସ୍କାରକ ଜଗନ୍ନାଥ ପରିସ୍ଥିତି ଦୃଷ୍ଟେ ସ୍ୱଇଚ୍ଛାରେ ପ୍ରାୟ ବର୍ଷକ ପରେ ବିଧବା ଭଉଜ 'ହୃଦୟମଣି'ଙ୍କୁ ବିବାହ କରିଥିଲେ ଏବଂ ଅନ୍ୟ ସମସ୍ତଙ୍କର ଶୁଭେଚ୍ଛା ତାଙ୍କୁ ଉତ୍ସାହିତ କରିଥିଲା । ଫଳରେ ଘରର ବୋହୂ ଘରେ ରହିଲା । ଅଦୃଷ୍ଟ ନିୟତିର ନିଷ୍ଠୁର ଇଙ୍ଗିତରେ ମନୁଷ୍ୟକୁ ସର୍ବଦା ପରିଚାଳିତ ହେବାକୁ ପଡ଼େ । ମାତ୍ର ପଚାଶୋଟି ବର୍ଷର ଦାମ୍ପତ୍ୟ ଜୀବନ ଅତିବାହିତ କରିବା ପରେ ପତ୍ନୀବିୟୋଗ ସହ୍ୟ କରିବାକୁ ହେଲା । ଜୀବନର ଏହି ଦୁଃଖ ଓ ବେଦନା ତାଙ୍କର କଳା ସୃଷ୍ଟିକୁ ପ୍ରଭାବିତ କରିବାରେ ଯଥେଷ୍ଟ ପ୍ରେରଣା ଯୋଗାଇଥିଲା । ଦୁଃଖ ଓ ସୁଖ ଉଭୟଙ୍କୁ ଜୀବନର ସାଥୀ କରି ଧୈର୍ଯ୍ୟର ସହ ସବୁ ବାଧାବିଘ୍ନକୁ ସେ ଅତିକ୍ରମ କରି ସାଧନା ପଥରେ ଆଗେଇ ଯାଇଥିଲେ—ଅତୀତକୁ ବିସ୍ମୃତି ଗର୍ଭରେ ନିକ୍ଷେପ କରି ।

ଜୁଆର ପରେ ଭଟ୍ଟା ଏବଂ ଅନ୍ଧାର ପରେ ଆଲୋକ ପରି ଶିଳ୍ପୀଙ୍କ ଜୀବନରେ ଆସିଥିଲା ଏକ ପରିବର୍ତ୍ତନ । ୧୯୦୭ ମସିହାରେ ଦ୍ୱିତୀୟଦାର ଭାବେ ଗ୍ରହଣ କରିଥିଲେ 'ସୌଭାଗ୍ୟ ମଞ୍ଜରୀ'ଙ୍କୁ, ଯେକି ସ୍ୱର୍ଗୀୟ ସୁମନ ମହାରଣାଙ୍କ କନ୍ୟା ଏବଂ ବନମାଳୀ ମହାରଣା (ଅଧୁନା ବିଶିଷ୍ଟ ତବଲା ବାଦକ ଓ ସଙ୍ଗୀତ ମହାବିଦ୍ୟାଳୟ ଭୁବନେଶ୍ୱରରେ ଅଧ୍ୟାପକ ଭାବେ ଅବସ୍ଥାପିତ) ଙ୍କ ଭଗ୍ନୀ । ସତରେ ସୌଭାଗ୍ୟମଞ୍ଜରୀଙ୍କୁ ପାଇଲା ପରେ ଶିଳ୍ପୀ ଜଗନ୍ନାଥ ମହାପାତ୍ର ଜଣେ ଭାଗ୍ୟବାନ ହୋଇ ପାରିଥିଲେ ପରବର୍ତ୍ତୀ କାଳରେ ଆଶାତୀତ ଭାବେ । ଶିଳ୍ପୀଙ୍କର କ୍ଷେତ୍ର-ମଣି, ନେତ୍ରମଣି ଓ ଇନ୍ଦୁଲତା ନାମକ ତିନିଗୋଟି କନ୍ୟା ଓ ହୀରାମଣି ହେଉଛନ୍ତି ପାଳିତା କନ୍ୟା ।

## ଶିଳ୍ପୀ ଓ ପଟ୍ଟଚିତ୍ର:

ପୁଣ୍ୟଭୂମି ଉତ୍କଳର କଳା, ସଂସ୍କୃତି ଓ ଐତିହ୍ୟର ଅଫୁରନ୍ତ ପ୍ଲାବନ ବହୁ ଶତାବ୍ଦୀ ଧରି ଏ ମାତୃଭୂମିକୁ ଉଜ୍ଜୀବିତ କରି ଆସୁଛି । ଏହାର ଇତିବୃତ୍ତକୁ ମାନସ-ପଟ୍ଟରେ ସ୍ମରଣ କରିବା ମାତ୍ରେ କଳାତ୍ମକ ରୋମାଞ୍ଚରେ ଆମ୍ଭେମାନେ ରୋମାଞ୍ଚିତ ହୋଇ ଉଠୁ ଏବଂ ଏଥିସହ ଗୌରବୋଜ୍ଜଳ କଳାର ଶିଳ୍ପୀଗଣଙ୍କୁ ବଧେଇ ଜଣାଇବାକୁ ପଛଉ ନାହିଁ ।

କଳାର ବିଭିନ୍ନ ଶ୍ରେଣୀ ବିଭାଗ ଅଛି । ଯଥା—ଚିତ୍ରକଳା, ସ୍ଥାପତ୍ୟକଳା, ସୂକ୍ଷ୍ମକଳା ଓ ସ୍ଥାପତ୍ୟକଳା ଇତ୍ୟାଦି । ଚିତ୍ରକଳା ମଧ୍ୟରେ ପଟ୍ଟଚିତ୍ର ହେଉଛି ଏହାର ଅଙ୍ଗବିଶେଷ । ବିଶେଷକରି ଏହା ଜଗନ୍ନାଥ ସଂସ୍କୃତି ସହିତ ସଂଶ୍ଳିଷ୍ଟ । କାଳକ୍ରମେ ଜାତୀୟତା ମୂଲ୍ୟବୋଧ ଉପରେ ପର୍ଯ୍ୟବସିତ ହୋଇ ଶତ ଉତ୍‌ଥାନ, ପତନ, ସଂଘାତ, ସଂଘର୍ଷ ଓ ବିଜୟ ମଧ୍ୟଦେଇ ଏହା ଗତିକରି ନିଜ ଜାତିରେ ସଂହତି ରକ୍ଷା କରିପାରିଲା ସାବଲୀଳ ଭାବେ । ସେହି କାଳରୁ ପଟ୍ଟଚିତ୍ରର ପ୍ରଚଳନ ଓଡ଼ିଶାରେ ହୋଇ ଆସୁଛି । ପ୍ରଥମେ ଏହା ଜଗତରନାଥ ଶ୍ରୀଜଗନ୍ନାଥମହାପ୍ରଭୁଙ୍କର ଅଣସର ପଟ୍ଟ ହିସାବରେ ଆରମ୍ଭ ମାତ୍ର । ମହାପ୍ରଭୁଙ୍କର ସ୍ନାନପୂର୍ଣ୍ଣିମାଠାରୁ ଚତାଳିଗି ଅମାବାସ୍ୟା ପର୍ଯ୍ୟନ୍ତ ଅଣସର ଗୃହରେ ବିଜେ ସମୟରେ

ପ୍ରତିବର୍ଷ ତିନ ଦିଅଁଙ୍କର ପଟଚିତ୍ର ବିଭିନ୍ନ ତିନିଜଣ ସେବକ (ଶିଳ୍ପୀ)ଙ୍କ ଦ୍ୱାରା ନିର୍ମିତ ହୋଇ ପୂଜିତ ହୁଅନ୍ତି ସିଂହାସନ ପାଖ ଉତ୍ତରଦ୍ୱାର ଦେଶରେ । ଏଥିପାଇଁ ମନ୍ଦିର ତରଫରୁ ଖଞ୍ଜା ଅଛି । *

"ଏ ଚିତ୍ରକାର ସେବକ ସ୍ନାନପୂର୍ଣ୍ଣିମାରେ ସ୍ନାନବେଦୀଚିତ୍ର କରନ୍ତି । ହାତରୁ ରଙ୍ଗ ଯୋଗାଇ ୩ ବାଡ଼ରେ ଗ: ସୁ: ଠାରୁ ଟ୧୫ ପାଆନ୍ତି । ସେଦିନ ରଥ ଅଣସର ପଟି ୪ଖଣ୍ଡ ଦେବେ । ଶ୍ରୀ ଜଗନ୍ନାଥଙ୍କ ବାଡ଼ ସେବକ ପତିତପାବନଙ୍କ ପଟି ଦିଅନ୍ତି ଓ ବାଡ଼ରେ ଟ ୩ ପାଆନ୍ତି । ଏମାନଙ୍କ ଦୁଆରକୁ ଘଣ୍ଟା, ଛତା, କାହାଳି, ପଟୁଆର ଗଲେ ୩ ଖଣ୍ଡ ପଟିନ ଜଗିକର ୩ ଜଣ ପଟି ବଜେକର ଆଣନ୍ତି ଓ ବଜେ ପର ଉକ୍ତ ପଟିନ ପାଆନ୍ତି । ପଟି ତିଆରି ପାଇଁ ୩ ଖଣ୍ଡ ୧୨ ହାତିଆ ଗଡ଼ା ପାଆନ୍ତି ।

ଏମାନେ ସୁ: ରଙ୍ଗ ଯୋଗାଇଲେ ରଥଚିତ୍ର କରନ୍ତି ଓ ଦୈନିକ ଟ ୧ ଖୋରାକି ରଥଯାତ୍ରା ମଧ୍ୟରେ ଗୋଟିଏ ଝୁଲ୍ଲେଇ ନେତା ଓ ଟ ୩୵୷ ମାମୁଲି ପାଆନ୍ତି । ଝୁଲଣ ମଣ୍ଡପରେ ଦରକାସ୍ତି ଚିତ୍ର କରନ୍ତି ଦୈନିକ ମଜୁରି ପାଆନ୍ତି ।"

ଶ୍ରୀଜଗନ୍ନାଥଙ୍କ ବାଡ଼ ସେବକ ଜନ୍ମାଷ୍ଟମୀକୁ କୃଷ୍ଣ ପଟି ଦିଏ ଓ କଂସ ପାହାଲ ଲେଖେ । ସେଥିପାଇଁ ରେଖ ସୁନ୍ଦର (ଠାକୁରଙ୍କ ଲାଗି କଳା ଧଳା ଓ ନାଲି ସୂତା) ପାଏ । ସେ ମଧ୍ୟ ବାମନ ଜନ୍ମରେ ବାମନ ପଟି ଦେଇ ଟ ୧ ପାଏ । ଷୋଳ ପୂଜାରେ ଶ୍ରୀ ଶ୍ରୀ ବିମଳା ମନ୍ଦିରରେ ଚିତ୍ର କରି ଟ ୧ ପାଏ । ସେ ରଙ୍ଗ ଆଣେ । ଦମନକ ବେଶ, କନ୍ଦର୍ପ ଅଧିବାସରେ କନ୍ଦର୍ପ ପଟି ଯୋଗାଇ ଟ ୦୷ ପାଏ । ରୁକ୍ମିଣୀ ବିଭାକୁ ମାଜଣା ମଣ୍ଡପରେ ଚିତ୍ରକରି ନିଜେ ରଙ୍ଗ ଯୋଗାଇ ଟ ୨୵ ପାଏ ।

---

* ଏ ସମ୍ପର୍କରେ ଶ୍ରୀମନ୍ଦିରଦ୍ୱାରା ପ୍ରକାଶିତ "Record of rights — Sri Jaganth Temple, Puri,"—ଦ୍ୱିତୀୟଭାଗ ୮୭ ପରିଚ୍ଛେଦ—'ଚିତ୍ରକାର'ରେ ଦ୍ରଷ୍ଟବ୍ୟ ।

ଚନ୍ଦନରେ ଉଭୟ ସେବକ କାମ କରନ୍ତି । ବୃପରେ ସୁ: ଯୋଗାଇ ରଙ୍ଗରେ ବଡ଼ ବାଡ଼ା ମଜୁରୀ ହାରରେ କାମ କରେ (ଦୈନିକ ଟ ୨ ) ଶ୍ରୀଜଗନ୍ନାଥଙ୍କ ବାଡ଼ ସେବକ ଚନ୍ଦନ ମଣ୍ଡପ ଜଗତି ଉପରେ ନିଜେ ରଙ୍ଗ ଯୋଗାଇ କାମ କରି ଟ ୧୫ ପାଏ ।

ଦୈନିକ ବା ପର୍ବାଣୀ ଖେଇ ନାହିଁ । କେବଳ ଝୁଲଣ ୭ ଦିନ ରାମ ମହାରଣା ୮ ଖଣ୍ଡ ଅମାଲୁ ଓ ଅଳ୍ପ କ୍ଷୀର ପାଏ । ଜମି ଖଞ୍ଜା ନାହିଁ । ଭଉଁରୀ ଓ ଅକ୍ଷୟ ତୃତୀୟାରେ ବଡ଼େଇସହ ଅନୁକୂଳ ନଡ଼ିଆ ଓ ଫାଳେ ଲେଖାଏ ଅନ୍ନ ମିଳେ ।

ସେବାର ଯୋଗ୍ୟତା ଓ ଅନ୍ୟାନ୍ୟ ବିବରଣୀ—ଏମାନେ ଶାଢ଼ୀବନ୍ଧା ଶୁଦ୍ର ସେବକ । ବ୍ୟବସାୟ ଜାଣି ସାବାଳକ ହୋଇ ଶାଢ଼ୀ ବନ୍ଧାଇ ସେବାରେ ନିଯୁକ୍ତ ହୁଅନ୍ତି । ଅକ୍ଷୟ ଓ ଭଉଁରୀ ଦିନ ବଡେଇ-ମାନଙ୍କ ସହ ଶାଢ଼ୀ ପାଆନ୍ତି । ସେବା ବଂଶାନୁକ୍ରମିକ କରି ଆସୁଅଛନ୍ତି । ସେବାରେ ତ୍ରୁଟି କଲେ ସେବା ବାସନ୍ଦ ହୋଇ ଅନ୍ୟ ଚିତ୍ରକାର ଦ୍ୱାରା କାମ କରାଯାଇ ପାରିବ ।

୧—କୃଷ୍ଣ ମହାରଣା, କୁଣ୍ଡେଇବେଣ୍ଟ ସାହି, ପୁରୀ (ବଡ଼ ବାଡ଼ ସେବା)

୨—ରାମ ମହାରଣା, କୁଣ୍ଡେଇ ବେଣ୍ଟସାହି, ପୁରୀ (ଶ୍ରୀଜଗନ୍ନାଥଙ୍କ ବାଡ଼ ସେବା) ।

୩—ରଘୁଦାସ, କୁଣ୍ଡେଇବେଣ୍ଟ ସାହି, ପୁରୀ (ମହିବାଡ଼ ସେବା) କରୁଥିଲେ ।

ଏହାଛଡ଼ା ଉପରୋକ୍ତ ସେବାୟତମାନଙ୍କର ଶବଦାହ ନିମନ୍ତେ ଶ୍ରୀମନ୍ଦିର ରୋଷଘରୁ ନିଆଁ ଯାଏ ଏବଂ ସେଥିରେ ଚିତାଗ୍ନି ଦିଆଯାଏ ।

ଏହି ପଟିଚିତ୍ରରୁ ପଟ୍ଟଚିତ୍ରର ଉଦ୍ଭବ ହେଲା । ସ୍ୱାଧୀନତା ପୂର୍ବରୁ ମୁଦ୍ରଣଶିଳ୍ପ ବିଶେଷ ପ୍ରାଧାନ୍ୟ ଲାଭ କରି ନ ଥିଲା—ଆମ ଏ ଓଡ଼ିଶାରେ । ଚିତ୍ରକାରମାନେ ଗ୍ରେଟ ଗ୍ରେଟ ପଟିରେ ଶ୍ରୀଜଗନ୍ନାଥ,

ବଳଭଦ୍ର ଓ ସୁଭଦ୍ରାଙ୍କର ଚିତ୍ର ଅଙ୍କନ କରି ବଜାରରେ ବିକ୍ରୀ କରୁଥିଲେ । ଦର୍ଶନାଭିଳାଷୀ ଯାତ୍ରୀମାନେ ଶ୍ରୀକ୍ଷେତ୍ରରୁ ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ କଲାବେଳେ ଉକ୍ତ ପଟ୍ଟଚିତ୍ର ସଂଗରେ ନେଇ ଯାଉଥିଲେ ନିଦର୍ଶନ ସ୍ୱରୂପ । ସାଧାରଣତଃ, ଉକ୍ତ ପଟ୍ଟଚିତ୍ରକୁ ପୁରୀସହର, ଦାଣ୍ଡସାହି ଓ ରଘୁରାଜପୁରର ଚିତ୍ରକାରମାନେ ଅଙ୍କନ କରି ବଡ଼ଦାଣ୍ଡରେ ବସି ବିକ୍ରୟ କରି ତହିଁରୁ ଉପାର୍ଜିତ ଅର୍ଥରେ ପରିବାର ଭରଣପୋଷଣ କରୁଥିଲେ ଏକ ବ୍ୟାବସାୟିକ ଭିତ୍ତିରେ ଆପଣାଇ କୌଳିକ ବୃତ୍ତିଭାବେ । ଆନନ୍ଦ ମହାନ୍ତି ନାମକ ଜନୈକ ତଦାନୀନ୍ତନ ରାଜକର୍ମଚାରୀ ଚିତ୍ରକାରମାନଙ୍କ ଠାରୁ ସ୍ୱଳ୍ପ ମୂଲ୍ୟରେ ପଟ୍ଟଚିତ୍ର ସଂଗ୍ରହ କରି ମୂଲ୍ୟା-ଧିକ୍ୟରେ ପୁରୀ ସହର ଓ ଓଡ଼ିଶା ବାହାରେ ବିକ୍ରୟ କରି ପ୍ରଭୂତ ଲାଭବାନ ହେଲେ । କଳାକାରର ମୂଲ୍ୟାଙ୍କନ କରିବା ଅତ୍ୟନ୍ତ ଦୂରୂହ ବ୍ୟାପାର । ଯିଏ ନିଜର ଶ୍ରମ ଓ ସାଧନା ବଳରେ ରକ୍ତକୁ ପାଣି କରି ନିଜର କଳାକୃତିରେ ଅନ୍ୟର ମନଲୋଭି କରିପାରିଲା, ସିଏ ହେଲା ସମାଜରେ ଅବହେଳିତ ଏବଂ ମୁନାଫାଖୋର ବ୍ୟବସାୟୀ ହେଲେ ଅଶେଷ ଲାଭବାନ୍ । ଏ ଦେଶ ଓ ଜାତି କଳାକାରକୁ ତାହାର ବାସ୍ତବ ସମ୍ମାନ ଦେଇ ଜାଣେନା । ଏହି ଦିଗରେ ପୁରୀର ରାୟବାହାଦୂର ଲୋକନାଥ ମିଶ୍ରଙ୍କ ପିତା ଭିକାରୀଚରଣ ମିଶ୍ର ଆଣିଥିଲେ ଏକ ନବ ଜାଗରଣ ଓ ଆନ୍ଦୋଳନ ଚିତ୍ରକାରମାନଙ୍କ ମଧ୍ୟରେ । ଚିତ୍ରକାରମାନଙ୍କ ମିଳିତ ଉଦ୍ୟମରେ ଏକ ସହଯୋଗ ସମିତି ମାଧ୍ୟମରେ ପଟ୍ଟଚିତ୍ରମାନ ବିକ୍ରୟ ହେଲା । ତେଣୁ ପ୍ରତ୍ୟକ୍ଷରେ ସେମାନେ ଯଥେଷ୍ଟ ଲାଭବାନ ହେଲେ । ଏହା ଫଳରେ ଏକ ଅନ୍ତର୍ବିବାଦ ସୃଷ୍ଟି ହୋଇଥିଲା । ଯଦ୍ୱାରା ଆନନ୍ଦ ମହାନ୍ତି ପଟ୍ଟଚିତ୍ରର ନମୁନା ନେଇ ବମ୍ବେରେ ଫଟୋଚିତ୍ର ମୁଦ୍ରଣ କଲେ । ଏହା ସୁଦୃଶ୍ୟ ନହେଲେ ମଧ୍ୟ ଶସ୍ତା ମୂଲ୍ୟରେ ବିକ୍ରୟ ହୋଇ ପାରିଲା । ଲୋକେ ଅଳ୍ପ ଦାମ୍‌ର ଛପା ରଙ୍ଗୀନ ଫଟୋ ନେବାକୁ ଆଗ୍ରହ ପ୍ରକାଶ କଲେ ହସ୍ତ-ନିର୍ମିତ ଦାମିକା ଚିତ୍ର ଅପେକ୍ଷା । କ୍ରମେ କ୍ରମେ ପଟ୍ଟଚିତ୍ରର ଚାହିଦା କମିଗଲା, ଫଳରେ ଦରିଦ୍ର ଚିତ୍ରକାରକୁଳ ମୁଣ୍ଡରେ ହାତ ଦେଇ କପାଳକୁ ଆଦରି ପଡି ରହିଲେ ସେହି ସର୍ବଶକ୍ତିମାନ କାଳିଆଠାକୁରଙ୍କ ନିକଟରେ ନିଜକୁ ସମର୍ପି ଦେଇ ।

## ପ୍ରତିଭାର କସ୍ତୁରୀ ଗନ୍ଧ :

୧୯୪୫ ମସିହା ହେଉଛି ଶିଳ୍ପୀ ଜଗନ୍ନାଥ ମହାପାତ୍ରଙ୍କ ଜୀବନରେ ଏକ ଗୌରବମୟ ଅବିସ୍ମରଣୀୟ ସମ୍ବତ୍ସର । ହେଲନା ଜେଲ୍ସ ନାମକ ଜନୈକା ବିଦେଶିନୀ ମହିଳା ପୁରୀର ମହୋଦଧି ନିକଟରେ ଥିବା ଏକ ବଙ୍ଗଳାରେ ଅବସ୍ଥାନ କରୁଥିଲେ । ଓଡ଼ିଶାରେ ରହଣିକାଳ ମଧ୍ୟରେ ଉତ୍କଳର ଲୋକସଂସ୍କୃତି, ସାହିତ୍ୟ ଓ କଳାପ୍ରତି ସେ ବିଶେଷ ଆକୃଷ୍ଟ ହେବା ସଙ୍ଗେ ସଙ୍ଗେ ପୁରୀର ବରିଷ୍ଠ ପଣ୍ଡିତ ସଦାଶିବ ରଥଶର୍ମାଙ୍କ ଠାରୁ ଓଡ଼ିଆଭାଷା ଶିକ୍ଷା କରିଥିଲେ ଏ ସଂପର୍କରେ ଅତ୍ୟଧିକ ଅବଗତ ହେବାର ଆକାଂକ୍ଷା ନେଇ । କୋଣାର୍କ, ପୁରୀ, ଭୁବନେଶ୍ବର ଓ ଯାଜପୁର ତଥା ଅନ୍ୟାନ୍ୟ ମନ୍ଦିର ଗାତ୍ରରେ ଖୋଦେଇ ନିଖୁଣ ମୂର୍ତ୍ତିଗୁଡ଼ିକର ଗଠନ ପ୍ରଣାଳୀ, ଅଙ୍ଗନ୍ୟାସ ଓ ପରିପାଟୀ ଇତ୍ୟାଦିର ଜୀବନ୍ତମୂର୍ତ୍ତି ଦେଖି ସେ ହୋଇ ଉଠିଲେ ଆତ୍ମହରା । ପୁରୀ-ଦାଣ୍ଡସାହିର ପାଣୁ ମହାରଣାଙ୍କ ହସ୍ତ ନିର୍ମିତ କେତେକ ପଟ୍ଟଚିତ୍ର ତାଙ୍କୁ ବିମୁଗ୍ଧ କରିପାରିଥିଲା । ତେଣୁ ସେ କେତେ ଖଣ୍ଡ ପଟ୍ଟଚିତ୍ରର ବରାଦ କରିଥିଲେ ସ୍ୱଦେଶକୁ ନେବାଲାଗି ପାରିଶ୍ରମିକ ଦେଇ । କ୍ରମେ ପୁରୀସହର ତଥା ନିକଟସ୍ଥ ସ୍ଥାନମାନଙ୍କରେ ବସ ବାସ କରୁଥିବା ଶିଳ୍ପୀମାନଙ୍କୁ ସେ ପ୍ରେରଣା ଯୋଗାଉଥିଲେ ଏ ଦିଗରେ ଅଗ୍ରଣୀ ହେବାକୁ । ପାଣୁ ମହାରଣାଙ୍କ ପ୍ରଦତ୍ତ ଚିତ୍ରମାନ ସମସ୍ତଙ୍କୁ ନିଜର ଦେଖାଉଥିଲେ ତଦନୁଯାୟୀ ଅଙ୍କନ କରିବା ପାଇଁ । ପ୍ରତ୍ୟେକ ରବିବାର ଦିନ ଦାଣ୍ଡସାହି ଓ ରଘୁରାଜପୁରକୁ ସେ ଯାଉଥିଲେ ଏହି ପଟ୍ଟଚିତ୍ରମାନ ସଂଗ୍ରହ କରିବାକୁ । ଫଳରେ ଶିଳ୍ପୀମାନଙ୍କ ହୃଦୟରେ ଆଗ୍ରହ ଓ ନବଉଦ୍ଦୀପନା ଜାଗରିତ ହୋଇ ଶିଥିଳ ହୋଇ ଯାଇଥିବା ହସ୍ତର ତୂଳିକା କ୍ରମେ ହେଇ ଉଠିଲା ଚଳ ଚଞ୍ଚଳ, ଅତୀତ ଗୌରବକୁ ଫେରି ପାଇବାର ପ୍ରୟାସ ନେଇ ।

ଏକ ରବିବାରର ଅଳସ ମଧ୍ୟାହ୍ନରେ ହେଲନା ଜେଲ୍ସ ରଘୁରାଜପୁରରେ ପହଞ୍ଚିଲେ ଶିଳ୍ପୀମାନଙ୍କୁ ଏକ ପ୍ରତିଯୋଗିତାବାପନ୍ନ କରିବା ଉଦ୍ଦେଶ୍ୟ ନେଇ । ଦଶ ଇଞ୍ଚ ବିଶିଷ୍ଟ ମାଟି ନିର୍ମିତ ଥାଳିଆ ଉପରେ ଚିତ୍ର ଅଙ୍କନ କରିବାକୁ ଅନୁରୋଧ କରିଥିଲେ ଇଚ୍ଛୁକ ଶିଳ୍ପୀମାନଙ୍କୁ । ଏହି ପ୍ରତିଯୋଗିତାରେ ଭାଗ ନେଇଥିଲେ ପୁରୀ ସହର, ଦାଣ୍ଡସାହି

(ବୀରପ୍ରତାପପୁର) ଓ ରଘୁରାଜପୁରର କେତେକ ଶିଳ୍ପୀ । ଉକ୍ତ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିବା ଶିଳ୍ପୀମାନଙ୍କ ମଧ୍ୟରେ ରଘୁରାଜପୁରର ସ୍ଥାନ ନଥିଲା । ତଥାକଥିତ ନିପୁଣ ଶିଳ୍ପୀମାନେ ଆଞ୍ଚଳିକ ବିଦ୍ୱେଷଭାବ ଜନ୍ମାଇ ଆପଣାର ସ୍ୱାର୍ଥସିଦ୍ଧି ନିମନ୍ତେ ଅନ୍ୟମାନଙ୍କ ଦ୍ୱାରା ରଚିତ ହୋଇଥିବା ଚିତ୍ରମାନ ଦର୍ଶାଇଥିଲେ । ଏତଦ୍‌ଭିନ୍ନ, ରଘୁରାଜପୁରର ଶିଳ୍ପୀମାନଙ୍କୁ ଅତି ହେୟଜ୍ଞାନ କରି ଉକ୍ତ ପୁରସ୍କାର ବିତରଣୀ ସଭାରେ ଆପେକ୍ଷମୂଳକ ଭାବେ ଆକ୍ରମଣ କଲେ । ଫଳରେ ନତମସ୍ତକ ହୋଇ ରଘୁରାଜପୁରର ଶିଳ୍ପୀମାନେ ନିଜଗ୍ରାମକୁ ପ୍ରତ୍ୟାବର୍ତ୍ତନ କରିଥିଲେ ଅନନ୍ୟୋପାୟ ହୋଇ । ସେହି ସନ୍ଧ୍ୟାରେ ଗ୍ରାମରେ ଏକ ଜାତିଆଣ ସଭାର ଆୟୋଜନ କରାଯାଇ ଏ ସମ୍ପର୍କରେ କିଭଳି ପଦକ୍ଷେପ ନିଆଯାଇପାରିବ, ତାହା ଆଲୋଚିତ ହୋଇଥିଲା । ଶିଳ୍ପୀ ଜଗନ୍ନାଥ ମହାପାତ୍ର ଏତିକବେଳେ ନିକଟସ୍ଥ ଗ୍ରାମ 'ଖାସପୋଷକ'ରେ ରାଜମିସ୍ତ୍ରୀ କାର୍ଯ୍ୟ କରି ସାମୟିକ ଭାବେ ଅବସ୍ଥାନ କରୁଥିଲେ ଓ ଘଟଣାଦିନ ଅନୁପସ୍ଥିତ ଥିଲେ । ତହିଁ ପରଦିନ ସକାଳେ ତାଙ୍କୁ ଏ ସମ୍ବନ୍ଧରେ ଅବଗତ କରାଇଲେ ଗ୍ରାମର କେତେକ ହତୋତ୍ସାହୀ ଶିଳ୍ପୀ । ଏ ବିବଦମାନ ପରିସ୍ଥିତିର ମୁକାବିଲା କରିବାକୁ ଯାଇ ଯୁବକ ଜଗନ୍ନାଥଙ୍କ ପ୍ରାଣରେ ଜାଗରିତ ହେଲା ଅଭୂତପୂର୍ବ ନବ ଉନ୍ମାଦନା । ଫଳରେ ସେ ହେଲେ ବଦ୍ଧପରିକର ସଂଗ୍ରାମରେ ଜୟୀ ହେବାର ନିଶ୍ଚିତତା ନେଇ, ନିଜ ଗ୍ରାମର ଟେକ ରଖିବା ପାଇଁ ।

ଶିଳ୍ପୀ ଜଗନ୍ନାଥ ବାଲ୍ୟାବସ୍ଥାରେ ଥିଲେ ଅତି ଜିଦ୍‌ଖୋର ପ୍ରକୃତିର । ଯେତେବେଳେ ଯାହା ବୁଝୁଥିଲେ ସେତେବେଳେ ତାହା କରିବାକୁ କେବେହେଲେ ପଛଉ ନ ଥିଲେ । ଆଗାମୀ ଉତ୍ସବାସରେ ଶିଳ୍ପୀ ପୂର୍ବ ନିର୍ଦ୍ଧାରିତ ମାଟି ଥାଳିଆରେ ସ୍ୱଅଙ୍କିତ "ମତ୍ସ୍ୟ ଅବତାର"ର ଏକ ପଟଚିତ୍ର ବିଦେଶିନୀ ମହିଳାଙ୍କୁ ପ୍ରଦାନ କରିଥିଲେ । ଚିତ୍ରର ଚମତ୍କାରିତା ତାଙ୍କୁ ଏଭଳି ମନମୁଗ୍ଧକର କରି ପାରିଥିଲା, ଯଦ୍ୱାରା କି ଦୀପ୍ତିମନ୍ତ ନୂତନ ସୂର୍ଯ୍ୟ ଆଲୋକର ଆଭାସ ପରିଶରେ ସେ ହୋଇ ଉଠିଲେ ଆତ୍ମବିସ୍ମୃତ । କେବଳମାତ୍ର ଶିଳ୍ପୀଙ୍କୁ ଅନୁରୋଧ କରି କହିଥିଲେ ପୁରୀକୁ ଯାଇ ତାଙ୍କୁ ବାସଭବନରେ ସାକ୍ଷାତ କରିବାକୁ ।

ଗିରିଧାରୀ ମହାପାତ୍ର ହେଲେନା କେଲୀଙ୍କ ବିଶେଷ ଆତିଥ୍ୟ ଗ୍ରହଣ କରିଥିଲେ । କଥା ପ୍ରସଙ୍ଗରେ ସେ କହିଥିଲେ—ସତରେ, ଓଡ଼ିଶାରେ ଏବେବି ଏପରି ଶିଳ୍ପୀ ଅଛନ୍ତି ଯେକି ଅତି ଜୀବନ୍ତଚିତ୍ର ଆଙ୍କି ପାରନ୍ତି ! ତାହା ମୋ ବିଶ୍ୱାସର ବାହାରେ । ଆପଣ କାହିଁକି ପୂର୍ବରୁ ପରିଚୟ ନ ଦେଇ ଏ-ଯାଏ ନିଜକୁ ଗୋପନୀୟ ରଖିଲେ ?

ଯଥା ସମୟରେ ଏହାର ପରିପ୍ରକାଶ ହେବ, ଏ ବିଶ୍ୱାସ ମୋର ଥିଲା—ସଂକ୍ଷେପରେ ଉତ୍ତର ଦେଇ ଥିଲେ ଶିଳ୍ପୀ ଜଗନ୍ନାଥ ମହାପାତ୍ର ଅତି ବିନମ୍ର ଭାବରେ ।

ପୂର୍ବରୁ ପ୍ରତିଯୋଗୀମାନଙ୍କୁ ପୁରସ୍କାର ବିତରଣ କରିଥିବାର ଅବତାରଣା ଦେଇ କହିଲେ—ପ୍ରକୃତରେ, ଆପଣ ହେଉଛନ୍ତି ପୁରସ୍କାର ପାଇବାକୁ ହକ୍‌ଦାର । ହୁଏତ ଅନ୍ୟଲୋକ ପାଇଗଲେ—ଆପଣ କ'ଣ ସେଥିପାଇଁ ଦୁଃଖିତ ନୁହଁନ୍ତି ?

ଅନ୍ୟର ସୁଖ ଦେଖି ମୁଁ କାହିଁକି ବା ଈର୍ଷା କରିବି ! ଯେଉଁଟା ଯାହାର ପ୍ରାପ୍ୟ ସେ ନିଶ୍ଚୟ ପାଇବ; ଏଥିରେ ସନ୍ଦେହ ନାହିଁ —ଅତି ନିର୍ଲିପ୍ତ ଭାବରେ କହି ଉଠିଲେ ଶିଳ୍ପୀ ଶ୍ରୀ ମହାପାତ୍ର ।

ତା'ପରେ ଶିଳ୍ପୀ ମହାପାତ୍ରଙ୍କର ଚିତ୍ରକଳା ବିଶେଷ ଆଦୃତ ହେଲା ପ୍ରତ୍ୟେକ କ୍ଷେତ୍ରରେ । ହେଲେନା କେଲୀ ତାଙ୍କଠାରୁ ପ୍ରଥମେ 'ଗଣେଶ' ଓ ହିଞ୍ଚାପୁରେ 'ଗୋପୀଙ୍କବସ୍ତ୍ରହରଣ'ର ଚିତ୍ରକଳା ନେବାକୁ ବରାଦ କଲେ । କ୍ରମେ ମୃଗନାଭିରୁ କସ୍ତୁରୀର ରସାସ୍ୱାଦନ ଭଳି ରାଜ୍ୟ ତଥା ରାଜ୍ୟ ବାହାରେ ମଧ୍ୟ ତାଙ୍କର ସୁନାମ ପ୍ରକଟିତ ହେବାକୁ ଲାଗିଲା । ପରିଶେଷରେ ଆନ୍ତର୍ଜାତିକ କ୍ଷେତ୍ରରେ ମଧ୍ୟ ବିଶେଷ ସୁଖ୍ୟାତି ଅର୍ଜନ କରି ପାରିଥିଲେ ।

## ଅହଲ୍ୟାର ଶାପ ମୋଚନ / ମାନସମ୍ମାନ :

ରାମଚନ୍ଦ୍ରଙ୍କର ପଦ ସ୍ପର୍ଶରେ ଅଭିଶପ୍ତା ଅହଲ୍ୟା ଯେପରି ଶାପମୋଚନ ହୋଇ ପୁନର୍ଜନ୍ମ ଲାଭ କଲା, ହେଲେନା କେଲୀଙ୍କ ଉତ୍ସାହ ଉଦ୍ଦୀପନା ଓ ପ୍ରଚେଷ୍ଟାରୁ ଶିଳ୍ପୀ ଜଗନ୍ନାଥ ମଧ୍ୟ ସେପରି ନିଜର ସୁପ୍ତ-

ପ୍ରତିଭା ପ୍ରକାଶ କରି ପାରିଥିଲେ । ଜଣେ ସୁଦକ୍ଷ ପଟ୍ଟଚିତ୍ର ଶିଳ୍ପୀ ଭାବରେ ଉତ୍କଳୀୟ ପାରମ୍ପରିକ ପଟ୍ଟଚିତ୍ରର ଉତ୍କର୍ଷ ପ୍ରତିପାଦନ କରିବାରେ ତାଙ୍କର ଦାନ ଅତୁଳନୀୟ । ଶିଳ୍ପୀଙ୍କର ଅବିରତ ସାଧନା ଓ କଠୋର ପରିଶ୍ରମ ଉତ୍କଳର ପାରମ୍ପରିକ ପଟ୍ଟଚିତ୍ର କଳାକୁ ବିଶ୍ୱଦରବାରରେ ସମ୍ମାନିତ କରିବାରେ ଯଥେଷ୍ଟ ସହାୟକ ହୋଇପାରିଛି ।

ଓଡ଼ିଶାର ତତ୍କାଳୀନ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବକୃଷ୍ଣ ଚୌଧୁରୀଙ୍କ ସହାୟତାରେ ଖଦୀବୋର୍ଡ଼ ଜରିଆରେ ନୂଆ ମୋତିସାହି ଛକରେ ଏକ କଳାକେନ୍ଦ୍ର ପ୍ରତିଷ୍ଠା କରାଯାଇ ପାରିଥିଲା ହେଲିନା ଜେମ୍ସଙ୍କ ସଫଳ ଉଦ୍ୟମ ଯୋଗୁଁ । ଏହି 'ଆର୍ଟ ଏଣ୍ଡ କ୍ରାଫ୍ଟ ସେଣ୍ଟାର'ର ମୁଖ୍ୟ ପରିଚାଳକ ଥିଲେ ଏକ ବଙ୍ଗୀୟ କଳାକାର ସୁହାସ ଦେ । ପ୍ରତ୍ୟେକ ଶିଳ୍ପୀଙ୍କ ଠାରୁ ଗୋଟିଏ ଲେଖା ପଟ୍ଟଚିତ୍ର ପୁଞ୍ଜି ହିସାବରେ ସଂଗ୍ରହ କରା-ଯାଇ ଅନୁଷ୍ଠାନଟି ଗଢି ଉଠିଥିଲା ।

୧୯୫୪ ମସିହାର ଶେଷ ଭାଗକୁ ଏହି କଳାକେନ୍ଦ୍ର ମଥା ଟେକି ଉଠିଲା ବେଳକୁ ହେଲିନା ଜେମ୍ସ ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ କରି ଯାଇଥିଲେ ଏବଂ ଯିବା ପୂର୍ବରୁ କେତେଗୋଟି ପଟ୍ଟଚିତ୍ର 'ଉତ୍କଳ ବିଶ୍ୱବିଦ୍ୟାଳୟ' ଦ୍ୱାରା ଆୟୋଜିତ କଟକରେ ହେଉଥିବା ଚିତ୍ର ଓ କଳା ପ୍ରଦର୍ଶନୀକୁ ପ୍ରେରଣ କରିଥିଲେ । ତନ୍ମଧ୍ୟରୁ ଶିଳ୍ପୀଙ୍କର 'କନ୍ଦର୍ପ-ରଥ' ପଟ୍ଟଚିତ୍ରଟି ପ୍ରଥମ ସ୍ଥାନ ଅଧିକାର କରି ଏକଶତ ମୁଦ୍ରା ପୁରସ୍କାର ଅର୍ଜନ କରିଥିଲା ।

୧୯୫୫ ମସିହାରେ ଓଡ଼ିଶା ସରକାରଙ୍କ କ୍ଷୁଦ୍ରଶିଳ୍ପ ସଂସ୍ଥାର ସୁପାରିଶ କ୍ରମେ ଶିଳ୍ପୀ ଜଗନ୍ନାଥ ମହାପାତ୍ର ଓଡ଼ିଶାର ଜଣେ ବିଶିଷ୍ଟ ପଟ୍ଟଚିତ୍ର ଶିଳ୍ପୀ ହିସାବରେ ସାଧାରଣତନ୍ତ୍ର ଦିବସରେ ଦିଲ୍ଲୀଠାରେ କୃଷ୍ଣ-କଳାକାର ଭାବେ ମାନପତ୍ର ପାଇଥିଲେ ।

୧୯୬୫ ମସିହାରେ ଦିଲ୍ଲୀଠାରେ ଆୟୋଜିତ ହୋଇଥିବା ଅଖିଳ ଭାରତ ହସ୍ତଶିଳ୍ପ ପ୍ରଦର୍ଶନୀରେ ରାଜ୍ୟ ସରକାରଙ୍କ କ୍ଷୁଦ୍ର ଶିଳ୍ପ ସଂସ୍ଥା ତରଫରୁ ସେ ଓଡ଼ିଶାର ପାରମ୍ପରିକ କଳାନୈପୁଣ୍ୟ ପଟ୍ଟଚିତ୍ର ନିର୍ମାଣ-

କୌଶଳ ପ୍ରଦର୍ଶନ କରିଥିଲେ ଏବଂ ତାଙ୍କର ପଟ୍ଟଚିତ୍ର ପାଇଁ ଶ୍ରେଷ୍ଠ ଶିଳ୍ପୀ ହିସାବରେ ପ୍ରଶଂସାପତ୍ର ପାଇଥିଲେ ।

୧୯୭୫ ମସିହାରେ ପୌରାଣିକ ଗଳ୍ପ ଉପରେ ଆଧାରିତ ପଞ୍ଚଦଶ ଖଣ୍ଡ ପଟ୍ଟଚିତ୍ର ସମ୍ବଳିତ ରାମାୟଣର ଆଦ୍ୟରୁ ପ୍ରାନ୍ତ ପର୍ଯ୍ୟନ୍ତ ପଦ୍ୟାବଳୀ ସହ ପ୍ରଦତ୍ତ ପୁସ୍ତିକା ନିମନ୍ତେ ତଦାନୀନ୍ତନ ରାଷ୍ଟ୍ରପତି ସ୍ୱର୍ଗୀୟ ସାର୍ ସର୍ବପଲ୍ଲୀ ରାଧାକୃଷ୍ଣନ୍‌ଙ୍କଠାରୁ ଓଡ଼ିଶାରୁ ପ୍ରଥମଥର ପାଇଁ "ଜାତୀୟ ପୁରସ୍କାର" ପାଇଥିଲେ ଦିଲ୍ଲୀଠାରେ ଅନୁଷ୍ଠିତ ସାଧାରଣତନ୍ତ୍ର ଦିବସରେ ଏକ ମନୋରମ ପରିବେଶ ମଧ୍ୟରେ । ଏଥି ସହିତ ତାଙ୍କୁ ଏକ ତାମ୍ର ଫଳକ ମଧ୍ୟ ପ୍ରଦାନ କରାଯାଇଥିଲା ।

୧୯୭୮ ମସିହାରେ ପୁରୀଠାରେ ଅନୁଷ୍ଠିତ ରାଜ୍ୟସ୍ତରୀୟ ଶିଳ୍ପ କଳା ପ୍ରଦର୍ଶନୀରେ ଶିଳ୍ପୀ ଜଗନ୍ନାଥ ମହାପାତ୍ର କୃତୀ କଳାକାର ଭାବେ 'କପ୍' ପାଇଥିଲେ ।

୧୯୭୯ ମସିହା ମାର୍ଚ୍ଚମାସ ୨୭ ତାରିଖରେ ଓଡ଼ିଶା ଲଳିତ କଳା ଏକାଡେମୀ ଶ୍ରୀ ମହାପାତ୍ରଙ୍କୁ ଜଣେ ସୁଦକ୍ଷ ପଟ୍ଟଚିତ୍ର ଶିଳ୍ପୀ ଭାବେ ସମ୍ବର୍ଦ୍ଧନା ଜ୍ଞାପନ କରି ପ୍ରଶଂସାପତ୍ର ପ୍ରଦାନ କରିଛନ୍ତି ।

ଚଳିତବର୍ଷ ଗତ ଜାନୁଆରୀ ମାସରେ ତିନିଦିନ ବ୍ୟାପୀ ଭୁବନେଶ୍ୱରଠାରେ ଶିଳ୍ପ ନିର୍ଦ୍ଦେଶାଳୟ ତରଫରୁ ଆୟୋଜିତ 'ନିଖିଳ ଉତ୍କଳ ପଟ୍ଟଚିତ୍ର ଶିଳ୍ପୀ ସମ୍ମିଳନୀ, ୧୯୮୧'ରେ ଏକନିଷ୍ଠ ସାଧନା ଓ ଅବଦାନ ପାଇଁ ଶିଳ୍ପୀ ଶ୍ରୀ ଜଗନ୍ନାଥ ମହାପାତ୍ରଙ୍କୁ 'ଶିଳ୍ପୀଗୁରୁ' ଉପାଧିରେ ଭୂଷିତ କରାଯାଇଛି ।

## ମସ୍କୋଯାତ୍ରା/ଆନ୍ତର୍ଜାତିକ କ୍ଷେତ୍ରରେ ପ୍ରାଧାନ୍ୟ ବୃଦ୍ଧି :

୧୯୭୬ ମସିହାରେ ମସ୍କୋଠାରେ ଅନୁଷ୍ଠିତ ହୋଇଥିବା ଶିଳ୍ପ ମେଳାରେ ରୁଷ-ଭାରତୀୟ ମୈତ୍ରୀ ଓ ସାଂସ୍କୃତିକ ସଂଘ ତରଫରୁ ଭାରତରୁ ସାତଜଣ ଶିଳ୍ପୀ ଯୋଗ ଦେଇଥିଲେ । ତନ୍ମଧ୍ୟରେ ଓଡ଼ିଶାର ଦୁଇଜଣ କୃତୀ ଶିଳ୍ପୀ ଥିଲେ ସମ୍ବଲପୁରର ମୋହନ ମେହେର ଓ ପୁରୀର

ଶ୍ରୀ ଜଗନ୍ନାଥ ମହାପାତ୍ର । ପ୍ରାୟ ଏକ ମାସ ପର୍ଯ୍ୟନ୍ତ ସେଠାରେ ଅବସ୍ଥାନ କରି ଉତ୍କଳର ପାରମ୍ପରିକ ପଟ୍ଟଚିତ୍ରର ନିର୍ମାଣ କୌଶଳ ପ୍ରଦର୍ଶନ କରି ଏହାର ବହୁଳ ପ୍ରଚାର ତଥା ଉତ୍କର୍ଷତା ପ୍ରତିପାଦନ କରିଥିଲେ । ଶ୍ରୀ ମେହେର ମଧ୍ୟ ଉତ୍କଳୀୟ କାର୍ପାସ ଶିଳ୍ପ ତଥା ସମ୍ବଲପୁରୀ ଓ କଟକୀ ଶାଢ଼ୀରେ ପ୍ରଦତ୍ତ ବିଭିନ୍ନ ଚିତ୍ରର ନିର୍ମାଣ କୌଶଳ ପ୍ରଦର୍ଶନ କରିଥିଲେ । ଦୂରଦର୍ଶନରେ ସାକ୍ଷାତ୍କାର ଦେଇ ଆନ୍ତର୍ଜାତିକ କ୍ଷେତ୍ରରେ ଏହାର ବହୁଳ ପ୍ରଚାର କରି ବିଭିନ୍ନ ଶିକ୍ଷାନୁଷ୍ଠାନର ନିମନ୍ତ୍ରଣ କ୍ରମେ ଉତ୍କଳୀୟ ପଟ୍ଟଚିତ୍ର ଉପରେ ଭାଷଣ ଦେଇଥିଲେ ନିଜର ମାତୃଭାଷା ଓଡ଼ିଆରେ । ତା'ପରେ ଶିଳ୍ପୀବନ୍ଧୁ ଶ୍ରୀ ମେହେର ହିନ୍ଦିରେ ଅନୁବାଦ କଲା ପରେ ପରେ ଇଂରାଜୀ ଓ ରୁଷ ଭାଷାରେ ଅନୁବାଦ କରିଥିଲେ 'ଗାଇଡ୍' ଭାବେ ଭାରତରୁ ଯାଇଥିବା ଅଖିଳ ଭାରତ କ୍ଷୁଦ୍ର ଶିଳ୍ପ ପ୍ରତିଷ୍ଠାନର ସହକାରୀ ଉନ୍ନୟନ ଅଧିକାରୀ ଶ୍ରୀଯୁକ୍ତ କେ. କେ. ଭଟ୍ଟନାଗର ଓ ସେଠାକାର ଜଣୈକ ଭାଷାବିତ୍ ।

## ସଂଗଠକ / ଶିଳ୍ପୀଗୁରୁ :

ଓଡ଼ିଶା ଲଳିତ କଳା ଏକାଡ଼େମୀ ୧୯୬୦ ମସିହାରେ ରାଜ୍ୟ ସରକାରଙ୍କ ଦ୍ୱାରା ସ୍ଥାପିତ ହୋଇଅଛି । ରାଜ୍ୟର ସୂକ୍ଷ୍ମକଳାର ଅଭିବୃଦ୍ଧି ନିମନ୍ତେ ବିଭିନ୍ନ କାର୍ଯ୍ୟ କରିଆସୁଅଛି ।ଶିଳ୍ପୀ ଶ୍ରୀ ମହାପାତ୍ର ପ୍ରାରମ୍ଭରୁ ୧୯୭୮ ମସିହା ପର୍ଯ୍ୟନ୍ତ ଏହାର ସଦସ୍ୟ ଥିଲେ ।

ସଳିତା ପରି ଜଳି ଅନ୍ୟକୁ ଆଲୋକ ଦେବାରେ ସେ ବେଶ୍ ଆନନ୍ଦ ଉପଲବ୍ଧି କରନ୍ତି । ଗୋଟିଏ ଦୀପରେ ସହସ୍ର ପ୍ରଦୀପ ପ୍ରଜ୍ୱଳିତ ହୋଇଉଠୁ, ଏହାହିଁ ହେଉଛି ତାଙ୍କର ଏକାନ୍ତ କାମନା । ପଟ୍ଟଚିତ୍ରର ମାନବୃଦ୍ଧି କରିବା ନିମନ୍ତେ ନିଜର ସୁଖ ସ୍ୱାଚ୍ଛନ୍ଦ୍ୟକୁ ଜଳାଞ୍ଜଳି ଦେଇ ସ୍ୱଜାତୀୟ ଶିଶୁମାନଙ୍କୁ ଶିକ୍ଷା ଦେବାରେ ଅଗ୍ରଣୀ ହେଲେ ୧୯୫୫ ମସିହା ଠାରୁ । ଗୁରୁକୁଳ ଆଶ୍ରମଭଳି ଅନ୍ତେବାସୀ ଭାବେ ଶିକ୍ଷାନବିଶଗଣ "କଳାକାର କେନ୍ଦ୍ର"ରେ ତାଲିମ ପାଆନ୍ତି । ସେମାନଙ୍କର ସମସ୍ତ ଦାୟିତ୍ୱ ଶିଳ୍ପୀ ଶ୍ରୀ ମହାପାତ୍ରଙ୍କୁ ବହନ କରିବାକୁ ପଡ଼ିଥାଏ ଏକ ବେସରକାରୀ ଏକକ ଅନୁଷ୍ଠାନ ଭାବେ । ସେ ହେଉଛନ୍ତି ଉକ୍ତ

ଅନୁଷ୍ଠାନର ପ୍ରାଣ-ପ୍ରତିଷ୍ଠାତା ଓ ମୁଖ୍ୟକର୍ତ୍ତା ମଧ୍ୟ । ଏ ଯାବତ୍ ଅନ୍ୟୂନ ୩୦୦ ତରୁଣ ଶିଳ୍ପୀଙ୍କୁ ପାରମ୍ପରିକ ପଦ୍ଧତିରେ କଳାରେ ଶିକ୍ଷାଦାନ କରି 'ଶିଳ୍ପୀଗୁରୁ' ହିସାବରେ ନିଜର ପ୍ରତିଷ୍ଠା ଅର୍ଜନ କରି ପାରିଛନ୍ତି । ଏବେ ବି ଉକ୍ତ ଅନୁଷ୍ଠାନଟିରେ ପ୍ରାପ୍ତ ବାରଜଣ ପର୍ଯ୍ୟନ୍ତ ଆଠ ବର୍ଷରୁ ବାରବର୍ଷଯାଏ ଶିଶୁ-ଶିକ୍ଷାର୍ଥୀ ଅବସ୍ଥାନ କରୁଛନ୍ତି ତଥାକଥିତ ଗୁରୁକୁଳ ଆଶ୍ରମରେ । ଅପୁତ୍ରିକ ଓ ତିନିଗୋଟି କନ୍ୟାର ପିତା ହେଲେ ମଧ୍ୟ ପୁତ୍ର ଅଭାବ ସେ କେବେହେଲେ ଉପଲବ୍ଧି କରନ୍ତିନ ଏକାଧିକ ଶିଶୁ ଶିଳ୍ପୀଙ୍କ ଗହଣରେ ରହି । କୋମଳମତି ବାଳକଙ୍କ ଅନାବିଳ ସ୍ନେହ ଓ ପ୍ରେମରେ ମଜ୍ଜିଯାଇ ନିଜକୁ ହଜାଇ ଦିଅନ୍ତି କଳା ମାଧ୍ୟମରେ ସମସ୍ତ ପାର୍ଥିବସୁଖ ସଂଭୋଗକୁ ଦୂରରେ ରଖି । ସେଥିରୁ ତାଙ୍କୁ ମିଳେ ପ୍ରଚୁର ଆନନ୍ଦ; ସେ ସଦା ସଦ୍ୟ-ପ୍ରସ୍ଫୁଟିତ ପୁଷ୍ପସଦୃଶ ସତେଜ, ପ୍ରଫୁଲ୍ଲ ।

ସନ୍ତାନର କୃତିତ୍ୱ ଯେପରି ପିତାମାତାଙ୍କୁ ସୁଖି କରାଏ— ସେହିପରି ଉପରୋକ୍ତ ଅନୁଷ୍ଠାନରୁ ଶିକ୍ଷାପ୍ରାପ୍ତି ପରେ ସର୍ବଶ୍ରୀ ବେଣୁଧର ମହାପାତ୍ର, ଭାଗବତ ମହାରଣା ଓ ଜୟଦେବ ମହାରଣାଙ୍କ କୃତିତ୍ୱରେ ସେ ନିଜକୁ ଗର୍ବିତ ମନେକରନ୍ତି । ବେଣୁଧର ମହାପାତ୍ର ୧୯୬୯ ମସିହାରେ ରାଷ୍ଟ୍ରପତି ପୁରସ୍କାର ପାଇଥିଲେ ଏବଂ ଭାଗବତ ମହାରଣା ଯେ'କ ବର୍ତ୍ତମାନ ଓଡ଼ିଶା ହସ୍ତଶିଳ୍ପ ତାଲିମ ଶିବିର, ଭୁବନେଶ୍ୱରରେ ଅବସ୍ଥାପିତ ଅଛନ୍ତି; ୧୯୭୩ ମସିହାରେ ଦିଲ୍ଲୀଠାରେ ଅନୁଷ୍ଠିତ "ଏସିଆ ବାଣିଜ୍ୟ ମେଳା"ରେ 'ସ୍ୱତନ୍ତ୍ର କୃତି ପୁରସ୍କାର' ଲାଭ କରି-ଥିଲେ ଓଡ଼ିଶାରୁ ।

ରଘୁରାଜପୁରରେ ୧୯୭୦ ମସିହାରୁ 'ରଘୁନାଥ ଚିତ୍ରକାରଗଣ ଶିଳ୍ପ ସମବାୟ ସମିତି' ନାମକ ଏକ ଅନୁଷ୍ଠାନ ଗଢି ଉଠିଛି ଶିଳ୍ପୀଙ୍କ ଅଦମ୍ୟ ଚେଷ୍ଟାଯୋଗୁଁ । ଏହାର ଅବୈତନିକ ସଭାପତି ଭାବେ ଏବେ ସୁଦ୍ଧା କାର୍ଯ୍ୟନିର୍ବାହ କରୁଛନ୍ତି କର୍ମମୟ ଜଞ୍ଜାଳ ମଧ୍ୟରେ ବୁଡ଼ି ରହି । ଉକ୍ତ ଅନୁଷ୍ଠାନର ଚବିଶ ଜଣ ସଦସ୍ୟ ଅଛନ୍ତି । ଏଥିରୁ ସଂଗୃହୀତ ପଟ୍ଟଚିତ୍ରମାନ ଓଡ଼ିଶା ରାଜ୍ୟ ସମବାୟ ହସ୍ତଶିଳ୍ପ ନିଗମକୁ ଯୋଗାଇ ଦିଆଯାଏ ଏବଂ ପ୍ରତିବଦଳରେ ମିଳୁଥିବା ପାରିଶ୍ରମିକ ହାର ଶିଳ୍ପୀକୁଳ

ନିଜ ନିଜର ଭରଣପୋଷଣ କରନ୍ତୁ । ବାସ୍ତବକ୍‌, ଏହାହିଁ ହେଉଛି ଏକ ସୁଚିନ୍ତିତ ପନ୍ଥା, ଯାହାଫଳରେ ଦୁଃସ୍ଥକଳାକାରଗଣ ଉପାର୍ଜନକ୍ଷମ ହୋଇପାରିବେ ପରମୁଖାପେକ୍ଷୀ ନହୋଇ; ଏଥିପାଇଁ ଶ୍ରୀମହାପାତ୍ରଙ୍କର ଦାନ ଅତୁଳନୀୟ ।

୧୯୫୫ ମସିହାରେ 'ଦିଲ୍ଲୀ ଡ଼ିଜାଇନ୍‌ ସେଣ୍ଟର', 'କଲିକତା ଡ଼ିଜାଇନ୍‌ ସେଣ୍ଟର' ଓ 'ବିଶ୍ୱଭାରତୀ' ଇତ୍ୟାଦି ଅନୁରୋଧ କରିଥିଲେ ଶ୍ରୀ ମହାପାତ୍ରଙ୍କୁ ଶିକ୍ଷକତା କରିବା ନିମନ୍ତେ । ହେଲେ,ସେ ଓଡ଼ିଶା ମାଟିର ମୋହ ଛାଡ଼ି ବାହାରକୁ ଯିବାକୁ ଚାହିଁଲେ ନାହିଁ । ଉଦ୍ଦେଶ୍ୟ ହେଲା, ଏହି ଗୌରବମୟ ଉତ୍କଳର ଐତିହ୍ୟ ଓ ପରମ୍ପରା ନେଇ ନୂତନ ଆଭିମୁଖ୍ୟରେ ନୂତନ କଳାକାର ଏହି ମାଟିରୁ ସୃଷ୍ଟି କରିବା ଏବଂ ଦେଶ ଜାତିର ଯଶକୀର୍ତ୍ତି ବଜାୟ ରଖି ହୃତଗୌରବ ଫେରାଇ ଆଣିବା । ଏହା କ'ଣ ଓଡ଼ିଶା ପକ୍ଷରେ ଏକ ଗୌରବ ନୁହେଁ ?

## ପରିଶିଷ୍ଟ :

୧୯୧୯ ମସିହା ଅକ୍ଟୋବର ୧୦ ତାରିଖ—ହୁଏତ ଏହି ଦିନ ଅନେକ ଶିଶୁ ଜନ୍ମନେଇଥିବେ ଏ ଦେଶରେ । ହେଲେ ଜଗନ୍ନାଥ ! କିଏ ଜାଣିଥିଲା, ସେଦିନର ନାଟୁଆ ଜଗୁ ଆଜି ଜଣେ ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ପଟଚିତ୍ର ଶିଳ୍ପୀଭାବରେ ସୁନାମ ଅର୍ଜନ କରିବ ?

## କର୍ମାନୁଯାୟୀ ଫଳ :

ଏତେ ସମ୍ମାନର ଅଧିକାରୀ ହୋଇ ମଧ୍ୟ ମନରେ ତାଙ୍କର ଟିକେମାତ୍ର ଗର୍ବ କିମ୍ବା ଅହଙ୍କାର ନାହିଁ । ବସ୍ତୁତଃ, ସେ ହେଉଛନ୍ତି ପ୍ରକୃତ କଳାକାର । ମୁହଁରେ ସେଇ ସରଳ ଅମାୟିକ ହସ, ଧୀର ସଞ୍ଜତ ସୁମିଷ୍ଟ ଭାଷା ଏବଂ ଚଷମା ଉହାଡ଼ରୁ ସେଇ ଶାନ୍ତ ଚାହାଣୀ— ସତରେ ତାଙ୍କୁ ମହାନ୍‌ କରି ତୋଳିଛି । ଶିଳ୍ପୀଙ୍କର ପଟଚିତ୍ରଗୁଡ଼ିକ କଳାନୈପୁଣ୍ୟର ଅମ୍ଳାନ ନିଦର୍ଶନ ଓ ପ୍ରତିଭାର ବୈଶିଷ୍ଟ୍ୟ ପ୍ରତିପାଦନ କରେ ।

ମନୁଷ୍ୟ ଧରପୃଷ୍ଠକୁ ପାଦଦେଲବେଳେ ଆସିଥାଏ ରିକ୍ତ ହସ୍ତରେ ଏବଂ ଯାଏ ମଧ୍ୟ ସେହିଭଳି ଶୂନ୍ୟତା ମଧ୍ୟକୁ । କିନ୍ତୁ ସାହିତ୍ୟିକ ବା କଳାକାର ରଖିଯାଏ ତା'ର କଳାତ୍ମକ ଗୁଣକୁ ସ୍ମାରକୀ ଭାବରେ ଯାହା ହୋଇଛି ଅକ୍ଷୟ । ଓଡ଼ିଶାର ଏହି ଅନନ୍ୟସାଧାରଣ ପଟ୍ଟଚିତ୍ର ଶିଳ୍ପୀ ଶ୍ରୀ ମହାପାତ୍ର ସମଗ୍ର ଓଡ଼ିଆ ଜାତିର ଏକ ଗୌରବମୟ ଉଜ୍ଜ୍ୱଳ ଜ୍ୟୋତିଷ୍କ—କଳାଜଗତରେ । ଶ୍ରୀ ଜଗନ୍ନାଥ ମହାପ୍ରଭୁ ତାଙ୍କୁ ଦୀର୍ଘାୟୁ କରନ୍ତୁ; ଏହାହିଁ କାମନା ।



# ନୃତ୍ୟଶିଳ୍ପୀ ଶ୍ରୀ ଭଗବାନ ସାହୁ

* ଡକ୍ଟର କୃଷ୍ଣଚରଣ ବେହେରା

ଉତ୍କୃଷ୍ଟ କଳାର ଦେଶ ଉତ୍କଳରେ ବିଭିନ୍ନ ପ୍ରକାର ନୃତ୍ୟ ଏକ ଜାତୀୟ ସଂପଦ । ବହୁ ପ୍ରାଚୀନ କାଳରୁ ମାହାରୀ ନୃତ୍ୟ, ଗୋଟିପୋ ବା ଆଖଡ଼ା ପିଲା ଆଦି ନାମରେ 'ଓଡ଼ିଶୀ ନୃତ୍ୟ' ଏ ଅଞ୍ଚଳରେ ପ୍ରଚଳିତ ରହିଛି—ଯାହାକୁ ଏବେ ଶାସ୍ତ୍ରୀୟତା ପ୍ରଦାନ କରାଯାଉଛି । ଏହା ବ୍ୟତୀତ ନାନାବିଧ ପାରଂପରିକ ନୃତ୍ୟ ଆମ ରାଜ୍ୟରେ ପ୍ରଚଳିତ ଅଛି । ତନ୍ମଧ୍ୟରୁ କେତେକ ନୃତ୍ୟଶୈଳୀକୁ ଏପର୍ଯ୍ୟନ୍ତ ମର୍ଯ୍ୟାଦାର ସହ ବଜାୟ ରଖିଛନ୍ତି ଶିଳ୍ପୀ ଶ୍ରୀ ଭଗବାନ ସାହୁ ।

ଗଞ୍ଜାମ ଜିଲ୍ଲା ବଡ଼କୁସ୍ଥଳୀ ଗ୍ରାମରେ ୧୯୧୪ ମସିହା ସେପ୍ଟେମ୍ବର ମାସ ୨୧ ତାରିଖରେ ଏକ ମଧ୍ୟବିତ୍ତ ବ୍ରାହ୍ମଣ ପରିବାରରେ ଭଗବାନ ସାହୁ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତା ବିନାୟକ ଶ୍ରଦ୍ଧାରେ ଭଗବାନ ବୋଲି ନାମକରଣ କଲେ । ବାଲ୍ୟ ସମୟରେ ଗ୍ରାମ୍ୟ ପାଠଶାଳାରେ ବିଦ୍ୟାଅଧ୍ୟୟନ କରି ଛତ୍ରପୁର ହାଇସ୍କୁଲରେ ଉଚ୍ଚଶିକ୍ଷା ପାଇଁ ନାମ ଲେଖାଇଲେ । କିନ୍ତୁ ବିଧିର ବିଡମ୍ବନା ଯେ ଅଷ୍ଟମ ଶ୍ରେଣୀରେ ପଢୁଥିବା ସମୟରେ ସେ ପାଠ ପଢ଼ା ତ୍ୟାଗ କଲେ । ବାଲ୍ୟ ସମୟରୁ ଆଧ୍ୟାତ୍ମିକ ଜ୍ଞାନ ଲଭିବାର ପିପାସା ମଧ୍ୟ ଥାଏ । କୌଣସି ସ୍ଥାନରେ ଯାତ୍ରା ମେଳା ହେଲେ ସେଠାକୁ ଯିବା ଓ ଭଗବାନଙ୍କୁ ଏକନିଷ୍ଠ ଭାବେ ପ୍ରାର୍ଥନା କରିବା ତାହାଙ୍କର କାର୍ଯ୍ୟ ହୋଇ ପଡ଼ିଲା । ବାଲ୍ୟସୁଲଭ ମତିରେ ଗୀତ ଗାଇବା, ନାଚ ଶିଖିବା, ବାଦ୍ୟ ବଜାଇବା—ଏ ସବୁରେ ମନୋନିବେଶ କରି ଅନେକ ପ୍ରକାର ଗାଉଣା, ବାଜଣା, ସଂକୀର୍ତ୍ତନ ଆଦିରେ ଶିକ୍ଷା ଲାଭ କଲାପରେ ଯାତ୍ରା ଓ ଥିଏଟର ଦଳରେ ଯାଇ ନିଜେ ଅଭିନେତା ସାଜି ଆତ୍ମତୃପ୍ତି ଲାଭ କରୁଥିଲେ । ତାପରେ ନିଜେ ଗୋଟାଏ ସୌଖିନ ଥିଏଟର ଦଳ ଗଠନ କରି କାର୍ତ୍ତିବୀର୍ଯ୍ୟ, କଳାପାହାଡ଼, ଶମ୍ବରାସୁର ପ୍ରଭୃତି ଅନେକ ବୀର ଭୂମିକାରେ ଅଭିନେତା ସାଜି ଜନସାଧାରଣଙ୍କ ଦ୍ୱାରା ଜଣେ ବିଶିଷ୍ଟ ଅଭିନେତା ଭାବେ ପ୍ରଶଂସିତ ହୋଇଥିଲେ । ତାପରେ ମାନସିକ ପରିବର୍ତ୍ତନ ଆସିଲା । ଭଗବାନଙ୍କୁ ପାଇବା ପାଇଁ ମନ ବଳିଲା । ଏଥୁ

ସାଂସାରିକ ମୋହମାୟାସବୁ ତ୍ୟାଗକରି ଅଯୋଧ୍ୟା, ବାରଣାସୀ, ମଥୁରା, ହରଦ୍ୱାର ଆଦି ବୁଲି ସାଧୁସନ୍ଥଙ୍କ ସାନ୍ନିଧ୍ୟ ଲାଭ ପାଇଁ ପ୍ରୟାସୀ ହେଲେ । ଅଯୋଧ୍ୟାରେ ଚାରି ମାସ ଅବସ୍ଥାନ କାଳରେ ତାଙ୍କ ମନର ଅଭିପ୍ସା ଭଗବତ ପ୍ରାପ୍ତି ପାଇଁ ଦୃଢ଼ୀଭୂତ ହେଲା । ସେ ଚିତ୍ରକୁଟ ଗିରିରେ ଉପାସନା କରିବାକୁ ସ୍ଥିର କଲେ ଓ ଚିତ୍ରକୁଟରେ ପହଞ୍ଚି ଧ୍ୟାନରତ ହେବାକୁ ପ୍ରସ୍ତୁତ ହେବା ସମୟରେ ଦୁଇଜଣ ଅପରିଚିତ ସାଧୁ ସେହି ଗିରିର ଘନ ଜଙ୍ଗଲରୁ ବାହାରି ସେଥିରୁ ତାଙ୍କ ବାରଣ କଲେ ଓ ଜନପଦ ଅଭିମୁଖରେ ତାଙ୍କୁ ବିଦାୟ କରିଦେଲେ । ନିମ୍ନମୁଖୀ ଜଳସ୍ରୋତ ଓ ଦୃଢ଼ପ୍ରତିଜ୍ଞ ସାଧକର କିଏ ଭଲା ଗତିରୋଧ କରିପାରିବ ? ସେ ସେଠାରୁ ପୁଣି ଋଷିକେଶ ଯାଇ ପବିତ୍ର ଗଙ୍ଗା ନଦୀରେ ସ୍ନାନାଦି ନିତ୍ୟ କର୍ମ ସାରି ବଦ୍ରୀନାରାୟଣର ଗିରିଶୃଙ୍ଗ ଆରୋହଣ କଲେ । ସେଠାରେ ଏକାଗ୍ର ଧ୍ୟାନରତ ସାଧୁ ସନ୍ନ୍ୟାସୀମାନଙ୍କର ଦର୍ଶନ ପାଇପାରିଥିଲେ । ସେମାନଙ୍କର ଆଶୀର୍ବାଦ ଓ ପ୍ରେରଣା ଲାଭ କରି ଅପୂର୍ବ ଆଶାରେ ସ୍ୱର୍ଗାଦପି ଗରୀୟସୀ ଜନ୍ମଭୂମିକୁ ପୁଣି ଫେରି ଆସିଲେ ।

ନିଜର ଚମତ୍କାର ଶାସ୍ତ୍ରୀୟ ନୃତ୍ୟାଦି ପରିବେଷଣ କରି ଉଚ୍ଚ ପ୍ରଶଂସିତ ହେଲେ ଓ ପରେ ପରେ ଏକ କଳାନୁଷ୍ଠାନ ଗଠନ କରିବାକୁ ମନ ବଳାଇ ଅଞ୍ଚଳର କଳାକାରମାନଙ୍କୁ ନେଇ 'ନରେନ୍ଦ୍ରପୁର କଳାବିକାଶ କେନ୍ଦ୍ର' ନାମରେ ଏକ ଅନୁଷ୍ଠାନ ଗଠନ କଲେ । ଶାସ୍ତ୍ରୀୟ ନୃତ୍ୟ ଗୀତାଦି ଯୁବକମାନଙ୍କୁ ଶିକ୍ଷାଦାନ କରି କ୍ରମଶଃ ଶାସ୍ତ୍ରୀୟ ସଙ୍ଗୀତରେ ଉନ୍ନତି ସାଧନା କରିଥିଲେ । ପୁରାତନ କଳା-ସଂସ୍କୃତି ବିଦେଶୀ ଶାସନରେ ଲୋପପାଇ ଆସୁଥିଲା । ତାହା ଉଦ୍ଧାର କରିବା ପାଇଁ ସେ ଚେଷ୍ଟିତ ହେଲେ । ପ୍ରଥମେ ଓଡ଼ିଶାର ଏକ ବୀର ନୃତ୍ୟ "ପାଇକ ନାଚ" ଯେଉଁଥିରେ ପୌରୁଷର ବିଭିନ୍ନ ଭଙ୍ଗି ଓଡ଼ିଶାବାସୀଙ୍କର ବିକ୍ରମର ପରିଚୟ ଦିଏ, ତାହା ଲୋକଙ୍କ ଆଗରେ ପ୍ରଦର୍ଶନ କରାଇ ଉଚ୍ଚ ପ୍ରଶଂସିତ ହୋଇ ପାରିଥିଲେ । ଏହି ପାଇକ ନୃତ୍ୟ ୧୯୬୮ରେ ସାଧାରଣତନ୍ତ୍ର ଦିବସରେ ଭାରତର ରାଜଧାନୀ ଦିଲ୍ଲୀଠାରେ ପରିବେଷଣ ହୋଇଥିଲା, ଓ ରାଷ୍ଟ୍ରପତିଙ୍କ ସ୍ୱତନ୍ତ୍ର ପୁରସ୍କାର ପାଇ ପାରିଥିଲା । ତାପରେ "ଦଣ୍ଡ ଚଢ଼େୟା ନୃତ୍ୟ"ର ଏକ ଅଂଶର ନୃତ୍ୟ ଶିକ୍ଷା ଦେଇ ଓ ଗବେଷଣା କରି ସେ ୧୯୭୧ ମସିହା ସାଧାରଣତନ୍ତ୍ର ଦିବସରେ ଦିଲ୍ଲୀଠାରେ ପ୍ରଦର୍ଶନ କରାଇଥିଲେ, ଯାହାକି ଦର୍ଶକ ମାନଙ୍କୁ ଚମତ୍କୃତ କରି ପାରିଥିଲା । ଏହି ନୃତ୍ୟର ଶେଷ ଭାଗରେ ଶ୍ରୀ ଭଗବାନ ସାହୁଙ୍କ ଢୋଲ ବାଦନ ପୃଥିବୀର ଢୋଲ ନୃତ୍ୟମାନଙ୍କ ମଧ୍ୟରେ ଅନ୍ୟତମ । ଏହି ପଲ୍ଲୀନୃତ୍ୟାଦି ଗବେଷଣା ଓ ଶିକ୍ଷା ଦ୍ରୁତ ଗତିରେ ଆଗେଇ ଚାଲିଲା । ସେ ଶାସ୍ତ୍ରୀୟ ନୃତ୍ୟାଦିରେ ଅଧିକ ମନ ନ ବଳାଇ ପଲ୍ଲୀ ନୃତ୍ୟର ଗବେଷଣାରେ ଲାଗି ପଡ଼ିଲେ । "ରଣପା ନୃତ୍ୟ"

ଯାହାକି ଦକ୍ଷିଣ ଓଡ଼ିଶାର ଗୋପାଳ ଜାତିର ସ୍ୱାତନ୍ତ୍ର୍ୟ, ତାର ଗବେଷଣା କରି ସେହି ନୃତ୍ୟ ପ୍ରଦର୍ଶନ କରିଥିଲେ । କ୍ରମଶଃ ଘୁମୁରା, ଚଉଡ଼ି, ପଞ୍ଚବାଦ୍ୟ ଏହି ଗୁଡ଼ିକର ଗବେଷଣା ଓ ସାଧନାକରି ଉଚ୍ଚ ପ୍ରଶଂସିତ ହୋଇ ପାରିଥିଲେ । ଭାରତର ଏପରି କୌଣସି ସହର ନାହିଁ, ଯେଉଁ ସ୍ଥାନରେ କି ଭଗବାନ ସାହୁଙ୍କର ପକ୍ଷୀନୃତ୍ୟ ପ୍ରଦର୍ଶିତ ନ ହୋଇ ରହିଯାଇଛି । ୧୯୭୫ ମସିହାରେ କେନ୍ଦ୍ର ସଙ୍ଗୀତ ନାଟକ ଏକାଡ଼େମୀ ପକ୍ଷୀ ନୃତ୍ୟ ଗବେଷକ ହିସାବରେ ଶ୍ରୀ ସାହୁଙ୍କୁ ସମ୍ମାନିତ କରିଥିଲେ ଓ ପରେ ପରେ ୧୯୭୭-୭୮ ମସିହାରେ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ କୃତି କଳାକାର ହିସାବରେ ରାଜ୍ୟ ପ୍ରଶସ୍ତ ପୁରସ୍କାର ପ୍ରଦାନ କରିଥିଲେ । .ପଞ୍ଚଷଠି ବର୍ଷ ବୟସ୍କ ଜଣେ ବ୍ୟକ୍ତି ଏକା ନିଃଶ୍ୱାସରେ ବିଭିନ୍ନ ନୃତ୍ୟ କରୁଥିଲେ ଓ ବାଜା ବଜାଇ ପାରୁଥିବା ଏକ ଚମତ୍କାର ଘଟଣା, ଯାହାକି ଶ୍ରୀ ସାହୁଙ୍କ ନିକଟରେ ପରିଲକ୍ଷିତ ହୁଏ ।

ସାଧନା ପଥର ଯାତ୍ରୀ ବିଭିନ୍ନ ଘାତ ପ୍ରତିଘାତରେ ମଧ୍ୟ ଉପସ୍ଥିତ ଲକ୍ଷ୍ୟରୁ ନିବୃତ୍ତ ହୁଏ ନାହିଁ । ଭଗବାନ ଜଣେ ସାଧକ; ସେ ଅବା କିପରି ସେଥିରୁ ଟଳନ୍ତେ ? ଅନେକ ପ୍ରକାର ଦଣ୍ଡ କସରତ ଓ ପ୍ରାଣାୟମ ବଳରେ ଅନେକ ସର୍କସୀୟ ଖେଳ ମଧ୍ୟ ସେ ଆୟତ୍ତ କରିପାରିଥିଲେ । ଏପରିକି ମଟର ଯାନର ପ୍ରଥମ ଚାଳନା ସମୟରେ ନିଜ ବଳରେ ତାର ଗତିରୋଧ କରିପାରୁ ଥିଲେ ଓ ଲୌହ ମୁଦ୍‌ଗଳ ବଙ୍କେଇବାରେ ତାଙ୍କର ଦକ୍ଷତା ଥିଲା । ତାପରେ ବହୁ ଅର୍ଥବ୍ୟୟ କରି ଅଦମ୍ୟ ସାହସ ବଳରେ ୮ ଫୁଟ୍ ଉଚ୍ଚ ଏକ ଗୋଲେଇ କାଠକୂପ ନିର୍ମାଣ କରାଇ ସେହି କୂପ ମଧ୍ୟସ୍ଥ ନିମ୍ନ ଚଟାଣରୁ କୁଇଣ୍ଟାଲ୍ ଓଜନର ଗୋଟିଏ ମଟର ସାଇକେଲ ଚଢ଼ି ଏହି କୂପର ସିଧା କାନ୍ଥ ଉପରେ ଖୁବ୍ ବେଗବାନ୍ ଓ ଚମତ୍କାର ଗତିରେ ବୁଲାଇଲେ । ଏହି ଚମତ୍କାର ମଟର ସାଇକେଲ ଖେଳଟିକୁ ତଦାନିନ୍ତନ ଓଡ଼ିଶାର କେତେକ ରାଜା ମହାରାଜା ଓ ବିଶିଷ୍ଟ ବ୍ୟକ୍ତିମାନେ ଉଚ୍ଚ ପ୍ରଶଂସା ସଙ୍ଗେ ସଙ୍ଗେ ସେଥିପାଇଁ ସ୍ୱର୍ଣ୍ଣପଦକ ମଧ୍ୟ ପୁରସ୍କାର ସ୍ୱରୂପ ତାଙ୍କୁ ପ୍ରଦାନ କରିଥିଲେ ।

ପିତା, ମାତା, ବନ୍ଧୁବାନ୍ଧବ ତାଙ୍କର ଏହି ମଟର ସାଇକେଲ୍ ଚାଳନାରେ ପ୍ରମାଦ ଗଣି ଏଥିରୁ ନିବୃତ୍ତ ହେବାକୁ ତାଙ୍କୁ ପ୍ରବର୍ତ୍ତାଇଲେ । ପିତ ମାତାଙ୍କ ଆଦେଶ ଲଂଘନ କରି ନ ପାରି ସେ ପୁରାପୁରି ଏହି ମଟର ସାଇକେଲ ଚାଳନାରୁ ନିବୃତ୍ତ ହେଲେ ।

ଉପସ୍ଥିତ ଇଶ୍ୱରସାଧନା କରି, ନୃତ୍ୟାଦି ଶିକ୍ଷା ପାଇଁ ମନ ବଳାଇ ଗୁରୁ ଶ୍ରୀ ପଂକଜ ଚରଣ ଦାସଙ୍କ ଅଧୀନରେ ଶାସ୍ତ୍ରୀୟ ନୃତ୍ୟ ଶିକ୍ଷା ଲାଭ କଲେ । ତାହାଙ୍କ

ନିର୍ଦ୍ଦେଶନାରେ ସେ ଦଶ ଅବତାର, ଭସ୍ମାସୁର ଓ ଓଡ଼ିଶୀ ନୃତ୍ୟାଦି ଶିକ୍ଷା କରିଥିଲେ । ସୌଖିନ କଳାକାର ସଂସ୍ଥାଦ୍ୱାରା ଆହୂତ ହୋଇ ନିଜର ଦେଶ ଭିତରେ ସେ ନୃତ୍ୟାଦି ପରିବେଷଣ କରିଥିଲେ । ବିଦେଶରୁ ମଧ୍ୟ ଡାକରା ଆସିଲା । ଏହି ଡାକରା ପାଇ ୧୯୭୫ ମସିହାରେ ଭୁଟାନର ରାଜଧାନୀ ଥିମ୍ପୁଠାରେ ତାଙ୍କର ପଲ୍ଲୀ ନୃତ୍ୟାଦି ପରିବେଷଣ କରି ଲୋକଙ୍କୁ ବାକ୍ଶୂନ୍ୟ କରି ଦେଇ ପାରିଥିଲେ । ୧୯୭୬ ମସିହା ସେପ୍ଟେମ୍ବର ମାସରେ ଭାରତ ସରକାରଙ୍କ ସାଂସ୍କୃତିକ ବିଭାଗ ଦ୍ୱାରା ପ୍ରେରିତ ହୋଇ ମଧ୍ୟପ୍ରାଚ୍ୟର ବିଭିନ୍ନ ଦେଶ ଯଥା—ସିରିଆ, ଆବୁଧାବୀ, ତର୍ଓ୍ୱାଲ ଓ ୟେମେନ୍‌ରେ ନୃତ୍ୟାଦି ପରିବେଷଣ କରି ଉଚ୍ଚ ପ୍ରଶଂସିତ ହୋଇଥିଲେ ।

ସେ ଜଣେ ଦୃଢ଼ମନା ବ୍ୟକ୍ତି । ଯାହା କରିବାକୁ ଇଚ୍ଛା କରନ୍ତି, ତାକୁ ହାସଲ ନ କଲା ପର୍ଯ୍ୟନ୍ତ ଶୁଅନ୍ତି ନାହିଁ । ଏହି ଦୃଢ଼ତା ଓ ଏକାଗ୍ରତା ବଳରେ ସେ ବଳୀୟାନ୍ । ଶ୍ରୀ ସାହୁ ଏପରି ଆକାଶ ଭଉଁରୀ, ସର୍ପ ଭଉଁରୀ, ମାଥା ଢୋଲ ବଜାଇବାରେ ଅଭ୍ୟସ୍ତ ଯେ, ଦର୍ଶକମଣ୍ଡଳୀ ତାହା ଦେଖିଶୁଣି ବିସ୍ମୟମୁଗ୍ଧ ହୋଇ ଯାଆନ୍ତି । ଏହି ବିଶିଷ୍ଟ ଢୋଲ ବାଦନର ଭବିଷ୍ୟତ୍ ଯେନ ସେ ସର୍ବଦା ବ୍ୟାକୁଳ । ନରେନ୍ଦ୍ରପୁର କଳାବିକାଶ କେନ୍ଦ୍ରର ସ୍ଥାୟିତ୍ୱ ଓ ଭୂୟୋବିକାଶ ଏବଂ ଢୋଲ ବାଦନରେ ନିଜର ଜଣେ ଉତ୍ତରାଧିକାରୀ ଗଢ଼ିବା—ଶ୍ରୀ ସାହୁଙ୍କର ଶେଷ ଇଚ୍ଛା ଥିବାର ଜଣାପଡେ ।

